# କଥାନୁଭୂତିରେ ଶ୍ରୀଜଗନ୍ନାଥ

ଲେଖକ :
ରବୀନ୍ଦ୍ର ନାରାୟଣ ମିଶ୍ର

ପ୍ରକାଶିକା ଓ ସ୍ୱତ୍ୱାଧିକାରିଣୀ :
ଶ୍ରୀମତୀ ରେଣୁକା ଦେବୀ

ପ୍ରଥମ ପ୍ରକାଶ :
ସ୍ନାନପୂର୍ଣ୍ଣିମା
୧୫ ଜୁନ୍, ୧୯୯୨

ମୂଲ୍ୟ :
ପଚିଶି ଟଙ୍କା ମାତ୍ର

ପ୍ରଚ୍ଛଦ ଓ ଅଲଂକରଣ :
ଶଶିକାନ୍ତ ରାଉତ

ମୁଦ୍ରକ :
ପ୍ରଜାତନ୍ତ୍ର ପ୍ରେସ, କଟକ-୨

KATHANUBHUTIRE SRIJAGANNATHA

Author :
Rabindra Narayan Mishra

Publisher :
Smt. Renuka Devi

1st Edition :
Snana Purnami
15th June, 1992

Price :
Rs. : Twenty Five Only

Cover and Layout :
Shasikanta Rout

Printer :
Prajatantra Press, Cuttack-2

ଏ ବହିଟି

ଗୁରୁଗୋବିନ୍ଦଙ୍କ ପାଦ ତଳେ

ମୋର ଭକ୍ତିପୂର୍ଣ୍ଣ ସମର୍ପଣ......

ସ୍ନାନପୂର୍ଣ୍ଣିମୀ
୧୫.୭.୧୯୯୨

ନାନୀ,
ତୁମକୁ ସାଦା ମହାପ୍ରସାଦ
ଖୁବ୍ ଭଲଲାଗେ । ତାର କାରଣ
ଯାହା ତ ପାଇବ ପାଇବ, ଯାହା ବଳିଯାଏ
ତୁମେ ପଖାଳ କରି ତନ୍ଦ୍ରୀଆରଦ୍ଧନ କଂସାରେ ଧରି
ବସିଯାଅ ମନ ଆନନ୍ଦରେ
ପ୍ରଭୁ ପ୍ରସାଦ ପାଇବାକୁ ପୁଣି ଥରେ ।

ଗୁରୁଗୋବିନ୍ଦଙ୍କୁ ସମର୍ପଣ ପରେ
ଏ ବହିଟି ମଧ୍ୟ ମୋ’ ପାଇଁ ପ୍ରସାଦ ହୋଇଗଲା ।

ପ୍ରଥମେ ଏ ପ୍ରସାଦ ତୁମରି ହାତରେ ଟେକି ଦେଉଛି ।

ସବୁବେଳେ ତୁମ ହାତକୁ
ଜିନିଷଟିଏ ବଢ଼େଇଦେଲେ ମୂଲ୍ୟ ମାଗେ ।
ଏ ପ୍ରସାଦର ମୂଲ୍ୟ ମାଗୁଛି ତୁମର ସ୍ନେହାଶୀର୍ବାଦ ।

ଆଶାକରେ,
ସବୁଦିନେ ସେ ମୂଲ୍ୟ ମତେ ଦେଉଥିବ ।
କାରଣ ଏଇଟା ମୋର ତୁମକୁ ଅନୁରୋଧ ନୁହେଁ,
ତୁମ ପାଖରେ ମୋର ଦାବୀ ।

ସ୍ନେହାଧୀନ
**ରବି**

**ଶ୍ରୀମତୀ ଇଲା ପଣ୍ଡା**
ଭୁବନେଶ୍ୱର

# କଥାନୁଭୂତ

"କଥାନୁଭୂତରେ ଶ୍ରୀଜଗନ୍ନାଥ" ଶ୍ରୀଜଗନ୍ନାଥଙ୍କ ଉପରେ ଆଧାରିତ ଏଗାରଗୋଟି ଗଳ୍ପ ଓ ରଚନାର ସମାହାର । ଓଡ଼ିଶାର ବହୁ ସ୍ୱନାମଧନ୍ୟ ଲେଖକ ମହାପ୍ରଭୁଙ୍କୁ କେନ୍ଦ୍ର କରି ବହୁ ଗଳ୍ପ ରଚନା କରିଛନ୍ତି । ସେଥିରୁ କେତେକ ଐତିହାସିକ ତଥ୍ୟ ଉପରେ ଆଧାରିତ, କେତେକ ପୌରାଣିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଏବଂ କେତେକ କିମ୍ବଦନ୍ତୀପ୍ରସୂତ । ଶ୍ରୀଜଗନ୍ନାଥ ଆମର ଦୈନନ୍ଦିନ ଜୀବନ ସହିତ ଏତେ ଓତଃପ୍ରୋତ ଭାବେ ଜଡ଼ିତ ଯେ ଓଡ଼ିଶାର ପ୍ରତ୍ୟେକ ହିନ୍ଦୁର ସେ ହେଉଛନ୍ତି ପରିବାର-ମୁଖ୍ୟ । ତାଙ୍କୁ ନିମନ୍ତ୍ରଣ ନ ଦେଲେ ଆମର ବାହାଘର ବ୍ରତଘର ଇତ୍ୟାଦି ଆରମ୍ଭ କରିହୁଏନି, ତାଙ୍କ ନାଁ ନ ଧରିଲେ ଆମର ଯାତ୍ରା ଆରମ୍ଭ କରି ହୁଏନି, ତାଙ୍କ ନିର୍ମାଲ୍ୟ ନ ପାଇଲେ ଆମର ଦେହ ପବିତ୍ର ହୁଏନି, ତାଙ୍କ ନାଁ ସକାଳୁ ନ ଧରିଲେ ଆମର ଦିନ ଆରମ୍ଭ ହୁଏନି, ତାଙ୍କ ମହାପ୍ରସାଦ ନ ଛୁଇଁଲେ ଆମର ନିତ୍ୟ ଆଦି ପୁଣ୍ୟକର୍ମ ହୁଏନି । ଏ ସବୁଥିରେ ଆମେ ତାଙ୍କୁ ଆମ ଘର ଲୋକ ହିସାବରେ ଯେତିକି ଆମ ଅନ୍ତରରେ ନେଇଥାଉ, ତାଙ୍କୁ ପରଂବ୍ରହ୍ମ ବା ପୁରୁଷୋତ୍ତମ ହିସାବରେ ସେତିକି ଗ୍ରହଣ କରି ନ ଥାଉଁ । କେବଳ ସେତିକି ନୁହେଁ, ଓଢ଼ଣ ଷଷ୍ଠୀ, ରେଖା ପଞ୍ଚମୀ, ସାତପୁରି ଅମାବାସ୍ୟା, ଅକ୍ଷୟ ତୃତୀୟା, ଚିତାଲାଗି ଅମାବାସ୍ୟା ପ୍ରଭୃତି ଓଡ଼ିଶାର ମୁଖ୍ୟ ପର୍ବପର୍ବାଣିଗୁଡ଼ିକର ଶ୍ରୀଜଗନ୍ନାଥଙ୍କ ନୀତି ସହିତ ଆମର ସାମାଜିକ ତଥା ଧାର୍ମିକ ସମ୍ପର୍କ ରହିଛି । ସାରା ଜୀବନ ଜଗନ୍ନାଥଙ୍କୁ ଆଶ୍ରା କରି ଅନ୍ତିମକାଳରେ ପାଟିରେ ଟିକେ ନିର୍ମାଲ୍ୟ ପାଣି ପାଇବାକୁ ସଭିଁଙ୍କର ଶେଷ-ଇଚ୍ଛା ଥାଏ ।

ଏମିତି ଏକ ପ୍ରଭୁ ପାଖରେ ଗୁହାରି କରିବାର ସୁଯୋଗ ଏ ସାନନ୍ଦିନ ଲେଖକର ଭାଗ୍ୟରେ ଜୁଟିଥିଲା । ଏ ପ୍ରଭୁ ଯେତେ ଦାସବତ୍ସଳ, ବୋଧେ ଆଉ କେହି ଏହାଙ୍କର ସମକକ୍ଷ ହେବେ ନାହିଁ । ଗୋଟିଏ ଉଦାହରଣ ଦେଉଛି । ସେଥିରୁ ପାଠକପାଠିକାମାନେ ଜାଣିପାରିବେ ପ୍ରଭୁ କିପରି ଅନନ୍ୟ ଦାସବତ୍ସଳ । ପ୍ରତ୍ୟହ ଶ୍ରୀଜଗନ୍ନାଥ ମନ୍ଦିରରେ ଯେଉଁ ପ୍ରଥମ ଭୋଗ (ଜଳଖିଆ) ବଢ଼ାଯାଏ, ତା'ର ମନ୍ଦିର ପ୍ରଚଳିତ ନାମ ହେଲା ଗୋପାଳବଲ୍ଲଭ । ଏଥିରେ ମୁଖ୍ୟତଃ ଖଇ, କୋରା, ଖୁଆ ମଣ୍ଡା (ପେଡ଼ା), ସର, ଲବଣୀ, ଫଳ, ପ୍ରଭୃତି ଅର୍ପଣ କରାଯାଇଥାଏ । ଏ ଭୋଗରେ କୌଣସି ରନ୍ଧନ ଦ୍ରବ୍ୟ ପ୍ରଭୁଙ୍କୁ ସମର୍ପଣ କରାଯାଏ ନାହିଁ । ପ୍ରଭୁଙ୍କୁ ଏହି ଭୋଗ

ଅର୍ପଣ କରିବା ପୂର୍ବରୁ ପ୍ରଭୁଙ୍କ ଦ୍ୱାରପାଳ (ଜୟ ଓ ବିଜୟ) ଦୁହିଁଙ୍କୁ ପ୍ରଥମେ ପୂଜାକରି ଭୋଗ ଦିଆଯାଇଥାଏ । ତତ୍ପରେ ସୂର୍ଯ୍ୟଦେବଙ୍କୁ ପୂଜାକରି ଭୋଗ ଦିଆଯାଇଥାଏ । ପ୍ରଥମେ ଦ୍ୱାରପାଳ ଖାଇଲେ ତା'ପରେ ପ୍ରଭୁ ଜଳଖିଆ କରିବେ, ଏହାଠାରୁ ବଳି ଦାସବତ୍ସଳତାର ଉଦାହରଣ କ'ଣ ଥାଇପାରେ ? ଆମ୍ଭମାନଙ୍କର ଦୈନନ୍ଦିନ ଜୀବନରେ ଗୃହର ପୂଜ୍ୟାତ୍ମାଙ୍କ କଥା ଆମର ମନେ ରହେନି । ଆମ୍ଭେମାନେ ନିରାଳମ୍ବରେ ତାଙ୍କୁ ପାଶୋରିଦେଇ ଛ' ଟଙ୍କିଆ ନଅ ଭଜା ମଣ୍ଡିତ ମଣୋହିରେ ବସିଯାଉ । କିଏ ମନେ ପକେଇ ଦେଲେ ବା ବିଳେ ମନକୁ ଆସିଲେ ଆମେ ନିଜ ଉପରୁ ନିର୍ଲଜ୍ଜଭାବେ ଦୋଷ ଛଡ଼େଇ ଦେଉ, "ହଉ ହଉ, କ'ଣ ଦ'ଟା ସେମାନଙ୍କୁ ଦେଇଦିଅ", "ଏତେ ବ୍ୟସ୍ତତା ଭିତରେ ମନେ ପଡ଼ିଲାନି, ଛାଡ଼" ଇତ୍ୟାଦି, ଇତ୍ୟାଦି । ଏ ଭୁଲ୍ ପାଇଁ ଆମ ମନରେ ଅନୁଶୋଚନା ବା ଅନୁତାପ ନ ଥାଏ, ବରଂ ଏହା ଅତି ସାମାନ୍ୟ ବୋଲି ଆମେ ନିଜକୁ କ୍ଷମା ଦେଇ ଦେଉ । ମାତ୍ର ଜଗତର ନାଥ (ଜଗନ୍ନାଥ) ଯିଏକି ହେଲେ ତାଙ୍କ ଦ୍ୱାର ପ୍ରହରୀଙ୍କୁ ଭୁଲନ୍ତି ନାହିଁ । ସେମାନେ (ଜୟ ଓ ବିଜୟ) ଆଗ ଖାଇଲେ ଓ ସୂର୍ଯ୍ୟଦେବଙ୍କୁ ନୈବେଦ୍ୟ ଅର୍ପଣ କରାଗଲା ପରେ ପ୍ରଭୁଙ୍କ ଆଗରେ ଗୋପାଳବଲ୍ଲଭ ବଢ଼ା ହୁଏ ।

ମହାନୀୟତା କେବଳ ଏଥିରେ ଫୁଟି ଉଠେନି । ପ୍ରଭୁର ମହାନୀୟତାର ତାଲିକା କରିବସିଲେ ତାଲିକା ସରିବନି । ପ୍ରଭୁ ଯେତେ କ୍ଷମାଶୀଳ, ବୋଧେ ତାଙ୍କ ପରି ଆଉ କେଉଁ ଦିଅଁ ସେତେ କ୍ଷମାଶୀଳ ନୁହନ୍ତି । ପ୍ରଭୁଙ୍କର ବଂଶପରମ୍ପରା-କ୍ରମେ ସେବାନିରତ ସେବକଗଣ ଜାଣନ୍ତି, ମହାପ୍ରଭୁଙ୍କ ('ଜଗନ୍ନାଥ'ଙ୍କୁ ମହାପ୍ରଭୁ କହନ୍ତି) ପାଖରେ ଦୋଷ ବିଶେଷ ଧର୍ତ୍ତବ୍ୟ ନୁହେଁ । ମହାପ୍ରଭୁ ନିଶ୍ଚୟ କ୍ଷମାକରି-ଦେବେ । ସେଥିପାଇଁ କଥାବାର୍ତ୍ତାରେ ଜଗନ୍ନାଥଙ୍କ ନାଁ ନେଇ ସେମାନେ ରାଣନିୟମ ପକାନ୍ତି, ମାତ୍ର କେବେହେଲେ ବଡ଼ଠାକୁର (ବଳଭଦ୍ର)ଙ୍କ ନାଁ ଧରନ୍ତିନି । କାରଣ ସେମାନଙ୍କର ଧାରଣା ବଦ୍ଧମୂଳ ଯେ ହଳଧର ମହା କ୍ରୋଧୀ ଓ ମହା ଉଗ୍ର । 'କ୍ଷମା' ଶବ୍ଦ ତାଙ୍କ ଅଭିଧାନରେ ନାହିଁ କହିଲେ ଚଳେ । ତେଣୁ ଅସତ୍ୟ କହୁଥିବା ଲୋକେ ବଡ଼ଠାକୁରଙ୍କ ରାଣନିୟମ ସାଧାରଣତଃ ପକାନ୍ତିନି । ଦୈନନ୍ଦିନ ଜୀବନରେ ଏହା ମଧ୍ୟ ପ୍ରମାଣିତ ହୋଇଛି ଯେ ମହାପ୍ରଭୁ ଯେତିକି କ୍ଷମାଶୀଳ, ସନ୍ତୁଷ୍ଟ, ବଳଭଦ୍ର ସେତିକି ଉଗ୍ର ଓ ସେତିକି ନଗ୍ରେଜ୍ଞବନ୍ଧା ।

ଗୋଟିଏ ଅସାଧାରଣ ପରିସ୍ଥିତିରେ ଆଜିକୁ ବାରବର୍ଷତଳେ ପ୍ରଭୁପାଦରେ ସେବା କରିବାର ସୁଯୋଗ ମିଳିଥିଲା । ସେତେବେଳେ ଜୀବନର ଚରମ ଦୁଃଖଦାୟକ ପରିସ୍ଥିତିର ସମ୍ମୁଖୀନ ହୋଇଥିଲା ଆମ ପରିବାର । ସେକଥା

ଲେଖିଲାବେଳକୁ ଏବେ ମଧ୍ୟ ଆଖିରେ ଲୁହ ରହୁନ । ହୃଦୟରୁ କୋହ ଉଠିଆସୁଛି । ମନ ବିବଶ ହୋଇଯାଉଛି, କଲମ ରହିଯାଉଛି । ଦାମ୍ପତ୍ୟ ଜୀବନର ଚତୁର୍ଦ୍ଦଶ ବର୍ଷରେ ବିଧିର ବିଡ଼ମ୍ବନା, ପୂର୍ବଜନ୍ମର ଦୁଷ୍କୃତ ଯୋଗୁଁ ଏକାଦିନକେ ଏକ ମର୍ମନ୍ତୁଦ ଦୁର୍ଘଟଣାରେ ଆମେ ଆମର ଦୁଇଟି ବାରତେରବର୍ଷର ପୁଅଙ୍କୁ ହରାଇଲୁ । ସେମାନଙ୍କର ଗର୍ଭଧାରିଣୀ ମୋ ସ୍ତ୍ରୀ ପାଗଳିନୀ ହୋଇଗଲା ଗଛପତର, ମାଟିଆକାଶ, ଘରବାହାର ସବୁଆଡ଼ ତା'ର ମାତୃତ୍ୱ ବିଦାରି ପକାଇଲା ପ୍ରାଣର ସନ୍ତାନ ଦୁଇଟିଙ୍କୁ ପାଇବା ପାଇଁ । ତାକୁ ଧୈର୍ଯ୍ୟ ଦେଇ ସ୍ୱାଭାବିକ ଅବସ୍ଥାରେ ରଖିବା ପାଇଁ ମୋର ସମସ୍ତ ଚେଷ୍ଟା ବିଫଳ ହେଲା । ଆମେ ଜୀବନ-ନାଆରେ ଥିଲୁ ପାଞ୍ଚଜଣ, ସ୍ୱାମୀ ସ୍ତ୍ରୀ ଓ ତିନୋଟି ପୁତ୍ରସନ୍ତାନ । ଅଚାନକେ ନାଆରୁ ଦି'ଜଣ କାଳଦରିଆକୁ ଛିଟିକିପଡ଼ି ହଜିଗଲେ । ରହିଲୁ , ଆମେ ତିନିଜଣ । ଅଥଚ ଦୁହିଁଙ୍କଠାରୁ ବେଶୀ ହରାଇଲା ସାନପୁଅଟି । ସେତେବେଳକୁ ତାକୁ ନଅବର୍ଷ । ଆତ୍ମଜ ଦୁଇଟିଙ୍କୁ ହରାଇ ଆମେ ଯେତେ ଦୁଃଖ ନ ପାଇଲୁ, ତା'ଠାରୁ ସେ ଅଧିକ ଦୁଃଖ ପାଇଲା । ଭାଇଙ୍କୁ ନୁହେଁ—ସେ ହରାଇଲା ତା' ଦୁଇ ସାଙ୍ଗଙ୍କୁ—ତା' ଖେଳ ସାଥୀଙ୍କୁ । ବହୁଦିନ ଧରି ସେ ସେମାନଙ୍କୁ ମନେ ରଖିଥିଲା । ବହୁଦିନଧରି ସେମାନଙ୍କ କଥା ସେ ମନେପକାଇ ଭାଙ୍ଗିପଡ଼ୁଥିବା ମୁଁ ଲକ୍ଷ୍ୟ କରିଛି । ପିଲା ବେଳ । ତା' ମୁଣ୍ଡରେ ପଶିଥାଏ ତା'ର ଦୁଇଭାଇସାଙ୍ଗ ସ୍ୱର୍ଗରେ ଅଛନ୍ତି । କେତେ ବେଳେବେଳେ ଦେଖେ, ସେ ଉଦାସ ଆଖିରେ ଆକାଶକୁ ଚାହିଁଥାଏ, କାଳେ ତା' ଦୁଇଭାଇଙ୍କୁ ଦେଖିପାରିବ ବୋଲି । ସ୍ତ୍ରୀ କଥା ନ କହିଲେ ଭଲ । ଆଜିଯାଏ ବି ସେ ସେମାନଙ୍କୁ ଭୁଲିପାରିନି । ଆଜି ବି ତା' ଆଖି ଛଳଛଳ ହୋଇ ଉଠେ—ତା'ର ପ୍ରାଣାଧିକ ସନ୍ତାନ ଦୁହିଁଙ୍କୁ ମନେପକାଇ ।

ଏମିତି ଏକ ଦୁଃଖଦାୟକ ପରିସ୍ଥିତିରେ ପଡ଼ିଥିଲାବେଳେ ସ୍ତ୍ରୀ ମୋର ବହୁତ ସାନ୍ତ୍ୱନା ପାଉଥିଲା ଜଗନ୍ନାଥ ମନ୍ଦିରକୁ ଆସି, ପ୍ରଭୁଙ୍କୁ ଦର୍ଶନ କଲେ । ତା'ର ଐକାନ୍ତିକ ଭକ୍ତିନିଷ୍ଠା ଫଳରେ ଆମ୍ଭମାନଙ୍କ ପକ୍ଷରୁ କୌଣସି ଚେଷ୍ଟା ନ କରି ମଧ୍ୟ ପ୍ରଭୁଙ୍କ ମନ୍ଦିରରେ ଏକ ଅଦ୍ଭୁତ ପରିସ୍ଥିତିରେ ସହକାରୀ-ପ୍ରଶାସକ ପଦବୀରେ ନିଯୁକ୍ତି ପାଇ ତାଙ୍କୁ ସେବା କରିବାର ସୁଯୋଗ ପାଇଲି ।

ପ୍ରଭୁଙ୍କ ସେବାରେ ନିଜକୁ ହଜେଇଦେଲି । ସେତେବେଳେ ବହୁ ବିଚିତ୍ର ଅନୁଭୂତି ସବୁ ହୋଇଥିଲା ଏ ଲେଖକର । ସେସବୁ ଅନୁଭୂତି ଲିପିବଦ୍ଧ କରିବାକୁ ପ୍ରବଳ ଆକାଙ୍‌କ୍ଷା ଥିଲେ ମଧ୍ୟ ପୁସ୍ତକର କଳେବର ବୃଦ୍ଧି ଦୃଷ୍ଟିରୁ ସେ ଇଚ୍ଛା

ସ୍ମରଣ କରୁଛୁ । ତଥାପି ବହୁ ଅନୁଭୂତିରୁ କେବଳ ଗୋଟିକ ଅନୁଭୂତି ପାଠକପାଠିକାଙ୍କୁ ଜଣାଉଛୁ ।

ନଅବର୍ଷ ତଳର କଥା । ଶ୍ରୀଜିଉଙ୍କ ରତ୍ନଭଣ୍ଡାରର ତିନିଗୋଟି ଚାବି ଯେଉଁ ତିନିଜଣଙ୍କ ହାତରେ ଥାଏ, ସେମାନେ ହେଲେ ରତ୍ନଭଣ୍ଡାର ସେବକ ଭଣ୍ଡାର ମେକାପ, ଗଜପତି ମହାରାଜା (ତାଙ୍କ ପକ୍ଷରୁ ତାଙ୍କ ମ୍ୟାନେଜର) ଏବଂ ପ୍ରଶାସନ ପକ୍ଷରୁ ସହକାରୀ ପ୍ରଶାସକ ହିସାବରେ ମୁଁ । ସେବର୍ଷ ରଥଯାତ୍ରା ପୂର୍ବରୁ ଆମ ତିନିଜଣଙ୍କ ଉପସ୍ଥିତିରେ ରତ୍ନଭଣ୍ଡାର ଖୋଲାଯାଇ ରଥ ଉପରେ ଓ ଗୁଣ୍ଡିଚା ଘରେ ଆବଶ୍ୟକ ଗହଣା ରତ୍ନଭଣ୍ଡାରରୁ ବାହାରକୁ ଆଣି ସେବକ ମାର୍ଫତରେ ରକ୍ଷା ହୋଇଥିଲା । ଶ୍ରୀଜିଉମାନେ ରଥରେ ବିଜେକରି ଗୁଣ୍ଡିଚା ମନ୍ଦିରକୁ ଗଲେ । ରଥଯାତ୍ରା ପରଦିନ ହଠାତ୍ ମନେ ପଡ଼ିଲା ରତ୍ନଭଣ୍ଡାର ଚାବି କେଉଁଠି ରଖିଛୁ । ଅଫିସ ଆଲମିରାଠାରୁ ଆରମ୍ଭ କରି ଘରର ପେଡ଼ିପୁଟୁଳା ପର୍ଯ୍ୟନ୍ତ ଆମେ ସ୍ୱାମୀ ସ୍ତ୍ରୀ ଲୋକ ନୟାନ୍ତ ହୋଇଗଲୁ । ଚାବି ହଜିଗଲେ ଯେ, ରତ୍ନଭଣ୍ଡାର ଖୋଲି କିଏ କ'ଣ କରିଦେବ, ସେ ଆଶଙ୍କା ଆଦୌ ନଥାଏ । କାରଣ, ଅନ୍ୟ ଦୁଇଜଣଙ୍କ ହାତରେ ତ ଚାବି ଅଛି । ତେଣୁ ଜଣଙ୍କର ଚାବି ହଜିଗଲେ ବି ରତ୍ନଭଣ୍ଡାର ଖୋଲି ହେବନି । କିନ୍ତୁ ଚାବି ହଜାଇବା ଗୋଟିଏ ଦାୟିତ୍ୱହୀନ କାର୍ଯ୍ୟ ବୋଲି ମୋର ମନ ବହୁତ ଖରାପ ପଡ଼ିଥିଲା । ଆମ ସ୍ୱାମୀସ୍ତ୍ରୀଙ୍କ ବ୍ୟତୀତ ଅବଶ୍ୟ ଏହା କେହି ଜାଣି ନଥିଲେ । ଏମିତି ମନସ୍ତାପ ଭିତରେ ଥାଏ । ରଥ ଉପରୁ ଯେଉଁଦିନ ଠାକୁର ଗୋଟି-ପହଣ୍ଡି ହୋଇ ଗୁଣ୍ଡିଚା ମନ୍ଦିରର ସିଂହାସନ ଉପରକୁ ଯାଉଥାଆନ୍ତି, ସେଇଦିନ ଏ ଅଦ୍ଭୁତ କଥାଟି ଘଟିଲା । ବଡ଼ଠାକୁରେ ଆଗରୁ ଯାଇ ସିଂହାସନ ତଳେ ବସିଥାନ୍ତି । ସୁଭଦ୍ରା ମା' ବି ଯାଇ ସିଂହାସନ ଉପରକୁ ଉଠି ନଥାନ୍ତି । ମହାପ୍ରଭୁ ମଧ୍ୟ ପହଣ୍ଡି ବିଜେକରି ତଳେ ବସିଥାନ୍ତି । ତାଙ୍କୁ ଦେଖିଲେ ଜଣାପଡ଼ୁଥାଏ ଯେପରି ପହଣ୍ଡି ଚାଲି ଯୋଗୁଁ କ୍ଳାନ୍ତହୋଇ ହାଲିଆ ହୋଇ ବସିଛନ୍ତି । ସେତିକବେଳେ ଜଣେ ବୁଢ଼ା ଦଇତା (ଇତିମଧ୍ୟରେ ସେ ସ୍ୱର୍ଗବାସୀ ହେଲେଣି) ମତେ କହିଲେ, 'ବାବୁ, ଏତିକବେଳେ କୁଣ୍ଢାଇକରି ମାଗ, ଯାହା ମାଗିବ ସେ ନିଶ୍ଚେ ଦେବେ । ଏଇ ହେଉଛି ବେଳ ।" ବିଶ୍ୱାସ ଅବିଶ୍ୱାସଭରା ମନରେ ମୁଁ ତାଙ୍କୁ କୁଣ୍ଢାଇ କହିଲି, "ଆଉ ସାତ ଆଠଦିନ ପରେ ଆପଣଙ୍କର ସୁନାବେଶ ପଡ଼ିବ । ଭଣ୍ଡାରରୁ ଅଳଙ୍କାର ବାହାରିବ । କିନ୍ତୁ ଚାବିଟି କୁଆଡ଼େ ନେଇ ଦେଇଛ । ଦୟାକରି ଚାବିଟି ଯେମିତି ପାଇବି, ବ୍ୟବସ୍ଥା କରନ୍ତୁ ।" ମନେମନେ ଅବଶ୍ୟ ଏକଥା ପ୍ରଭୁଙ୍କୁ ଜଣାଇଥିଲି । ପାଖରେ ଠିଆ ହୋଇଥିବା

ଦଇତାବୁଢ଼ା ପଚାରିଲେ, "ବାବୁ, କ'ଣ ମାଗିଲ ତ ?" ମୁଁ 'ହଁ' କରିବାରୁ ସେ କହିଲେ, "ଦେଖ, ଯାହା ମାଗିଲ ନିଶ୍ଚେ ପାଇବ । ମରିବାକୁ ବସିଲଣି । ମୋ କଥା ସତ କି ମିଛ ବୁଝିବ ।"

ମୋର କିନ୍ତୁ ଅଣୁକର ବିଶ୍ୱାସ ନଥାଏ ତାଙ୍କ କଥାରେ । ତଥାପି ଯେତେବେଳେ ଦଇତାବୁଢ଼ାଙ୍କ କଥାରେ ମାଗିଛି, କାଲେ ଚାବି ମିଳିଯାଇଥିବ ଭାବି, ସେଇ ଗୁଣ୍ଡିଚା ମନ୍ଦିରରୁ ଘରକୁ ଫୋନକରି ନାସ୍ତି ବାକ୍ୟ ଶୁଣିଲି । ମନର ଅବିଶ୍ୱାସ ଜମାଟ ବାନ୍ଧିଲା । ତଥାପି ବୁଢ଼ାଦଇତା କଥା ମନରେ ପୁଣି ପ୍ରତିଧ୍ୱନିତ ହେଉଥାଏ । "......ମରିବାକୁ ବସିଲଣି, ମୋ କଥା ସତ କି ମିଛ ବୁଝିବ ।" ସ୍କୁଟରରେ ଦଉଡ଼ିଲି ମନ୍ଦିର କାର୍ଯ୍ୟାଳୟକୁ । କାଲେ ବାଟରେ କେଉଁଠି ପଡ଼ିଥିବ, ମିଳିଯିବ । କେଉଁଠି କାହିଁ ମିଳିବ । କାର୍ଯ୍ୟାଳୟ ଆଗରେ ସ୍କୁଟର ଷ୍ଟାଣ୍ଡ ଉପରେ ରଖିଛି କି ନାହିଁ, ବୁଢ଼ା ସିଅନ କହିଲା, "ଆଜ୍ଞା, ଗୋଦାମଘର କଣ କାଠତକ୍ରୁ ଚାବିପେନ୍ଥା ମିଳିଛି । ଆପଣଙ୍କ ପାଖରେ ଥିବା ରତ୍ନଭଣ୍ଡାର ଚାବି ଭଳି ଜଣାପଡ଼ୁଛି । ଦେଖିବେ କି ?" ଆଗ୍ରହାତିଶଯ୍ୟରେ ତାକୁ ଚାବି ଆଣିବାକୁ କହି ଆଣିବାରୁ ଦେଖିଲି ଯେ, ସେଇଟା ହେଉଛି ରତ୍ନଭଣ୍ଡାର ଚାବି । ଚାବିଟି ପାଇ ମୁଣ୍ଡରେ ଲଗାଇଲି । ଯେଉଁ ଜାଗାରୁ ଚାବି ମିଳିଲା, ମୁଁ ସେତେବେଳକୁ ଉନବରଷ ହୋଇଥିବା ମନ୍ଦିର ଚାକିରୀ ଭିତରେ ଥରୁଟିଏ ବି ସେ ଜାଗାକୁ ମାଡ଼ି ନଥିଲି । ବୁଢ଼ାଦଇତାଙ୍କୁ ନାହିଁନଥିବା ଧନ୍ୟବାଦ ଜଣାଇଲି । କିନ୍ତୁ ମନରେ ଗୋଟାଏ ଅବଶୋଷ ଆସିଲା, 'ଆହା, ଏତେବଡ଼ ସୁଯୋଗ ଜୁଟିଥିଲା, ଏ ଚାବିଟା ନ ମାଗି ଆଉ କ'ଣ ହେଲେ ମାଗିଥାନ୍ତି ।"

ଦ୍ୱିତୀୟ ଅନୁଭୂତିଟି ଆହୁରି ରୋମାଞ୍ଚକର । ଆଜିକୁ ଦଶବର୍ଷ ତଳର ଘଟଣା । ଶ୍ରୀଜିଉଙ୍କର ଅଳଙ୍କାର ମରାମତି ହେଉଥାଏ । ପ୍ରଶାସନ ପକ୍ଷରୁ ମୁଁ ମରାମତି ଦାୟିତ୍ୱରେ ଥାଏ । କଟକରୁ ମଦନଦାସ ଏଣ୍ଡ କୋଃର କାରିଗରମାନେ ମରାମତି କରିବାକୁ ନିଯୁକ୍ତ ହୋଇଥା'ନ୍ତି ମନ୍ଦିର ପ୍ରଶାସନ ପକ୍ଷରୁ । ଠାକୁରଙ୍କ ସୁନା ଅଳଙ୍କାର ତ ଖାଣ୍ଟି ଦୃଷ୍ଟିରୁ ଦୁର୍ମୂଲ୍ୟ । ତେଣୁ ସକାଳ ସାତଟାରୁ ରାତି ଦଶଟା ପର୍ଯ୍ୟନ୍ତ ପ୍ରାୟ ପନ୍ଦରଘଣ୍ଟା ବସିବାକୁ ହେଉଥିଲା ମରାମତି ପାଖରେ । ନାଭିକଟା ମଣ୍ଡପରେ ମରାମତି କାର୍ଯ୍ୟ ହେଉଥିଲା । ଦୁଇ ତିନିଦିନ ମରାମତି କାର୍ଯ୍ୟ ଚାଲିବା ପରେ ଦେଖିଲି ଯେ ଚାବି ପଡ଼ିଥିବା ନାଭିକଟା ମଣ୍ଡପ ଚାରିପଟେ ଲୋକମାନେ ଗହଣା ମରାମତି ହେଉଥିବା ଜାଗାକୁ ଦେଖି ଦୂରରୁ ଗହଣାକୁ ମୁଣ୍ଡିଆ ମାରୁଛନ୍ତି । ମନେମନେ ଭାବିଲି, ଯଦି ଗୋଟିଏ ଚାବିପକା ଦାନବାକ୍ସ ରଖିଦିଆଯାଆନ୍ତା,

ଲୋକେ ବୋଧେ ମରାମତି ବାବଦକୁ ଦାନ କରନ୍ତେ । ଏତଦ୍ଦ୍ୱାରା ଗହଣା ମରାମତି ଖର୍ଚ୍ଚର କେତେକାଂଶ ଅନ୍ତତଃ ଉଠିଯାଆନ୍ତା । ଖୁବ ପଡ଼ୁଥିବା ବାକ୍ସଟି ଉପରେ "ଗହଣା ମରାମତି ପାଇଁ ସାହାଯ୍ୟ" ଲେଖି ବାହାରେ ଥୋଇଦେଲି । ସତକୁସତ ଲୋକମାନେ ସେଥିରେ ଦାନ ଦେବାକୁ ଆରମ୍ଭ କଲେ । ମୋର ମନେ ଅଛି, ଦୁ'ଜଣ ବୁଢ଼ାବୁଢ଼ୀ ଗହଣାକୁ ମୁଣ୍ଡିଆ ମାରି ଗଣ୍ଠିଲି ପକେଇ ବସି ପ୍ରାୟ ଘଣ୍ଟାଏ ଆଲୋଚନା କରି ଦାନବାକ୍ସରେ ଦେଢ଼ଟଙ୍କା ପକାଇଥିଲେ । ଚନ୍ଦନଗୁରଦିନ ଭିତରେ ଦାନବାକ୍ସରେ ପ୍ରାୟ ଦୁଇହଜାର ପାଖାପାଖି ଟଙ୍କା ଆଦାୟ ହୋଇଥିଲା ।

ଦିନେ ରାତିରେ ମରାମତି କାମ ସରିଲାବେଳକୁ ଟିକିଏ ଡେରି ହୋଇଗଲା । ସମ୍ଭବତଃ ଏଗାରଟା ପାଖାପାଖି ହେବ । ସକାଳ ସାତଟାରୁ ବସିବସି ଏବଂ ଶେଷରେ ସୁନାର ହିସାବପତ୍ର ଲେଖିସାରିଲାବେଳକୁ ଆମେ ସମସ୍ତେ ଶ୍ରାନ୍ତକ୍ଲାନ୍ତ ହୋଇ ପଡ଼ୁଥିଲୁ । ଗହଣା ବାକ୍ସର ଗୋଟିଏପଟେ କାଚ ଥାଏ । ସେଇ ପଟଟି ନାଭିକଟା ମଣ୍ଡପର ଗୋଟାଏ ଦୁଆର ଆଡ଼କୁ ରହୁଥିଲା । ତରତର ହୋଇ ଆମେ ଯିବାବେଳେ ଏହା ଲକ୍ଷ୍ୟ କରିପାରି ନ ଥିଲୁ । ତହିଁଆରଦିନ ସକାଳୁ ଆସି ଦେଖିଲାବେଳକୁ କେହି ଜଣେ ଦୁର୍ବୃତ୍ତ ଗୋଟାଏ ବାଡ଼ିରେ ସେ କାଚ ଭାଙ୍ଗି ସବୁ ଟଙ୍କା ଗୃହି ନେଇଯାଇଛି । ବାକ୍ସରେ ଖାଲି କେତୋଟି ମାତ୍ର ରେଜା ପଇସା ଛାଡ଼ି ଦେଇଯାଇଥାଏ ।

ବାକ୍ସର ଏ ଅବସ୍ଥା ଦେଖି ମତେ ବହୁତ ଦୁଃଖ ଲାଗିଲା । ବିଶେଷତଃ ସେ ବୁଢ଼ାବୁଢ଼ୀଙ୍କ କଥା ମନେପଡ଼ିଲା । ଆହା ! ଲୋକେ କେତେ ଆଗ୍ରହରେ ଦାନ କରିଥିଲେ । ମହାପ୍ରଭୁ ନିଜ ଟଙ୍କା ନିଜେ ରକ୍ଷାକଲେନାହିଁ କାହିଁକି ? ଶ୍ରୀଜଗନ୍ନାଥଙ୍କ ଉପରେ ରାଗ ଓ ଅଭିମାନ ଜୁଡ଼େଇ ହୋଇ ପଡ଼ିଲା । ସ୍ୱର୍ଗତ ନିମାଇଁ ହରିଚନ୍ଦନ ମତେ ଥରେ କହିଥିଲେ, "ବାବୁ, ଯେତେବେଳେ ମନକୁ ଯାହା ଆସିବ, ଠାକୁରଙ୍କ ଆଗରେ ସିଧା ଠିଆହୋଇ କହିବ । ସେ ନିଶ୍ଚେ ଶୁଣିବେ । ତାଙ୍କର ପାଦତଳେ ସେବା କରୁଛି ? ସେବକ କଥା ସେ ଶୁଣିବେନି ?"

ତାଙ୍କ କଥା ମନେ ପଡ଼ିଲା । ଦଉଡ଼ିଲି, ଜୟବିଜୟ ଦ୍ୱାରକୁ । ମହାପ୍ରଭୁଙ୍କୁ ପୁଣି କହିଲି, "······ଗହଣା ଦାନବାକ୍ସରୁ ଟଙ୍କା ଚୋରି ହୋଇଗଲା । କେତେ କଷ୍ଟରେ, କେତେ ସ୍ନେହରେ ଲୋକେ ଟଙ୍କା ଦେଇଥିଲେ । ଆପଣ ରକ୍ଷା କଲେନି । ଆପଣଙ୍କୁ ଲୋକେ ମିଛରେ 'ପରଂବ୍ରହ୍ମ' ବୋଲି କହୁଛନ୍ତି ।

ଅପଣଙ୍କଠାରେ ପରଂବ୍ରହ୍ମତ୍ୱର କାଣିଗୃଏ ବ ନାହିଁ । ଆପଣ ହେଉଛନ୍ତି ସୁଦ୍ଧ କାଠଗଡ଼......। ବାକ୍ସରେ ଅନୁମାନ ଦୁଇହଜାର ଖଣ୍ଡେ ଟଙ୍କା ଆଦାୟ ହୋଇଥିଲା । ଯଦି ଆପଣ ସତରେ ପରଂବ୍ରହ୍ମ, ତେବେ ଏଇ ଘଣ୍ଟାଏ ଦି'ଘଣ୍ଟା ଭିତରେ ଯଦି କେହି ଗ୍ରେଇ ଯାଇଥିବା ଦି' ହଜାର ଟଙ୍କା ଆଣି ଦେଇଦିଏ, ତେବେ ମୁଁ ଜାଣିବି ଆପଣଙ୍କଠାରେ ପରଂବ୍ରହ୍ମତ୍ୱ ବିଦ୍ୟମାନ, ଆପଣ ସ୍ୱୟଂ ପରଂବ୍ରହ୍ମ ।"

ଏତିକ କହୁଛି, ମତେ ଲଗିଲା-ସେ ଯେମିତି ମତେ କହୁଛନ୍ତି, "ତୁ ମନ୍ଦିର ଅଫିସକୁ ଯା ।"

ମୁଁ ପ୍ରତିବାଦ କଲି, "ଗହଣା ମରାମତିବେଳେ ମୁଁ ଅଫିସକୁ ଡାକ ଦେଖିବାକୁ ଯାଏ ବା ଶୌଗୃହକାମ ସାରିବାକୁ ଯାଏ । ଆଜି ରବିବାର, ତେଣୁ ଡାକ ଆସିବନ । ସକାଳୁ ମଧ୍ୟ ଶୌଗୃହର ଆବଶ୍ୟକତା ନାହିଁ । ଅଫିସକୁ କାହିଁକି ଯିବି ?"

ତଥାପି ସେ ଜିଦ୍ ଧରିଲେ, "ଅଫିସକୁ ଯା......ଅଫିସକୁ ଯା...... ଅଫିସକୁ ଯା......ଅଫିସକୁ ଯା......"

ବିରକ୍ତ ହୋଇ ଅଫିସକୁ ଗଲି । ବଡ଼ଦାଣ୍ଡରୁ ଦେଖିଲି, ଜଣେ ଅଫିସ ବାରଣ୍ଡାରେ ଏପଟ ସେପଟ ହେଉଛନ୍ତି । ମତେ ଦେଖୁଦେଖୁ ପଚାରିଲେ, "ଆଜ୍ଞା, ରବୀନ୍ଦ୍ର ନାରାୟଣ ମିଶ୍ରଙ୍କୁ ଟିକେ କେଉଁଠି ଦେଖା କରିପାରିବି କହିବେ କି ?" ମୁଁ ତାଙ୍କୁ ମୋ ପରିଚୟ ଦେବାରୁ ସେ ଗଦଗଦ ହୋଇ କହିଲେ, "ଯାହାଙ୍କୁ ପଚାରିଲି, ସେ କହିଲେ ଆଜି ଆପଣ ରବିବାର ଯୋଗୁଁ ଆସିବେନି ବୋଲି । ଯାହାହେଉ, ଆପଣ ଆସିଗଲେ । ମୋ କାମ ଏଥର ହୋଇଯିବ ।" ତାଙ୍କର ମୋଠାରେ କି କାମ ଅଛି ବୋଲି ପଚାରିବାରୁ ସେ କହିଲେ, "ରାଉରକେଲାରୁ ଆସିଥିଲି । କେତେଜଣ ବନ୍ଧୁ ମୋ ହାତରେ ଗ୍ରେଇହଜାର ଟଙ୍କା ପଠାଇଥିଲେ ଠାକୁରଙ୍କୁ ଦେବାକୁ । ଆପଣଙ୍କୁ ଦେବାକୁ କହିଥିଲେ, ତେଣୁ ଖୋଜୁଥିଲି......"

ତାଙ୍କଠାରୁ ଟଙ୍କା ରଖି ଉପରଓଳି ଆସି ରସିଦ ନେବାକୁ କହିଲି । ତା'ପରେ ସେ ଟଙ୍କାକୁ ଧରି ମୋ ଅଫିସଘରକୁ ପଶିଯାଇ ଭିତରୁ କବାଟ ଦେଇ

ପ୍ରଥମେ ଖୁବ୍ ହସିଲି । ତା'ପରେ ଅନୁତାପ-ସ୍ୱରରେ ଲୁହଉଛୁଳା ଆଖିରେ କହିଲି, "ପରଂବ୍ରହ୍ମ ! ମତେ କ୍ଷମା କର ।"

ଏଥର ତୃତୀୟ ଅନୁଭୂତଟି ଲେଖୁଛି । ସେଇ ଗହଣା ମରାମତି ବେଳର ଏ ଅନୁଭୂତି । ମହାପ୍ରଭୁ ଓ ବଡ଼ବାଡ଼ (ଚିନ ଠାକୁରଙ୍କୁ 'ବାଡ଼' ବୋଲି କୁହାଯାଇଥାଏ । ବଡ଼ବାଡ଼, ମହାପ୍ରଭୁ ବାଡ଼ ଓ ମଝିବାଡ଼) । ଠାକୁରଙ୍କ ମୁଣ୍ଡ ଉପରେ ସୁନାର ଯେଉଁ ବିରାଟ ଅର୍ଦ୍ଧଚନ୍ଦ୍ରାକୃତି ଗହଣା ପିନ୍ଧାଯାଏ, ତାକୁ କିରୀଟ କହନ୍ତି । ତିନିଠାକୁରଙ୍କ କିରୀଟ ମରାମତି ହେଉଥାଏ । ମହାପ୍ରଭୁଙ୍କ କିରୀଟର ଦୁଇପାଖ ତଳେ ରଖାହୋଇ ଘୋଷରାହୋଇଯାଉଥିବାରୁ ଦୁଇପାଖେ ଦୁଇଟି ରୂପା ଟଙ୍କା ବସାଇବାକୁ ଆମେ ନିଷ୍ପତ୍ତି କଲୁ । ସେଇ କିରୀଟଟି ଉଠାଉ ଉଠାଉ ମୋ ଡାହାଣ ହାତ ପାପୁଲିରେ ତା'ର ମୁନିଆଁ ଅଂଶ ପଶିଯାଇ ଧାରଧାର ରକ୍ତ ବୋହିଗଲା । ବ୍ୟସ୍ତହୋଇପଡ଼ିଲି । ଦେହରେ ଖଣ୍ଡିଆ ହେଲେ ଠାକୁରଙ୍କ ଜିନିଷ (ଭୋଗ, ଅଳଙ୍କାର ଇତ୍ୟାଦି) ଛୁଇଁବା କଥା ନୁହେଁ । ଚିନ୍ତାରେ ପଡ଼ିଲି, ଆସନ୍ତାକାଲି କେମିତି ଅଳଙ୍କାର ମରାମତି ହେବ । ପ୍ରଭୁଙ୍କ କାମ କେମିତି ବନ୍ଦ ନ ହୋଇ ଚାଲିବ । ସ୍ପଷ୍ଟଭାବେ ଡାହାଣ କାନରେ ଶୁଣିଲି ପ୍ରଭୁଙ୍କ ସ୍ୱର, "ବିମଳାଙ୍କ ମନ୍ଦିରକୁ ଯାଇ ସିନ୍ଦୂର ଲଗେଇ ଦେ, ଭଲ ହୋଇଯିବ ।" ମନେମନେ ମୁଁ ଉତ୍ତର ଦେଲି, "ସିନ୍ଦୂରରେ ଖଣ୍ଡିଆ ଭଲ ହୁଏନା ।" ସେ ପୁଣି ବୁଝାଇଲା ଭଳି କହିଲେ, "ବିମଳାଙ୍କ ସିନ୍ଦୂର ଟିକେ ଲଗେଇଦେ, କାଲିକୁ ଭଲ ହୋଇଯିବ ।" ମୁଁ ପୁଣି ପ୍ରତିବାଦ କଲି, "ସିନ୍ଦୂର ଖରାପ କରିବ ।" ସେ ପୁଣି ବୁଝେଇଲେ, "ମା'ଙ୍କ ସିନ୍ଦୂର ସବୁ କରିପାରିବ ।" ମୁଁ ଶୁଣିଲିନି । ସେ ଚେପ୍‌ରେକଡ଼ ବଜେଇଲେ ମୋ' କାନରେ, "ସିନ୍ଦୂର ଲଗେଇ ଦେ," "ମା' ବିମଳାଙ୍କ ସିନ୍ଦୂର ଲଗେଇ ଦେ, ସିନ୍ଦୂର ଲଗେଇଦେ ।" ବଡ଼ ବିରକ୍ତିକର । ଶେଷକୁ ସେ ବିରକ୍ତିକର ସ୍ୱରରୁ ରକ୍ଷା ପାଇବାକୁ ଶତକଡ଼ା ଦୁଇଶହ ଅବିଶ୍ୱାସଭରା ମନରେ ଚାଲିଯାଇ ମା' ବିମଳାଙ୍କ ମନ୍ଦିରକୁ ଯାଇ ପୁଳାଏ ସିନ୍ଦୂର ସେ ଖଣ୍ଡିଆ ଭିତରେ ଭର୍ତ୍ତି କରିଦେଲି ।

ଘରକୁ ଫେରି ରାତିରେ ଖାଇପିଇ ଶୋଇଲି । ଅନ୍ଧାରୁଆରୁ ଉଠି ମୋ ଡାହାଣ ହାତ ପାପୁଲିକୁ ଚାହିଁଲି । କି ଆଶ୍ଚର୍ଯ୍ୟ ! କେଉଁଠି ଖଣ୍ଡିଆ ହୋଇଛି ଜାଣିପାରିଲିନି । ଖଣ୍ଡିଆର ଚିହ୍ନବର୍ଣ୍ଣ ନ ଥାଏ । କେବଳ ଥାଏ ସିନ୍ଦୂରର ନାଲିଦାଗ । ପୃଥିବୀର କୌଣସି ଔଷଧ ବୋଧେ ପାଞ୍ଚଘଣ୍ଟା ଭିତରେ ଏ କ୍ଷତକୁ

ଭଲ କରିପାରି ନ ଥା'ନ୍ତି । ମହାପ୍ରଭୁଙ୍କୁ ମୁଣ୍ଡିଆ ମାରିଲି ମନେମନେ । ପ୍ରଭୁଙ୍କ ଶକ୍ତିର କଳନା କରିବା କେତେ ମୂର୍ଖତା––ସେଥର ତାହା ବୁଝିଲି ।

ଏମିତି କେତେକେତେ ବିଚିତ୍ର ଅନୁଭୂତି ହୋଇଛି । ତେଣୁ କୃତଜ୍ଞତା-କୃତାର୍ଥ ସ୍ୱରରେ ଅନେକଥର କହିଛି, ଯଦି ଗୃହକର୍ମ କରିବ, "ଏଇ କାଠଗଡ଼ (ପ୍ରଭୁ) ପାଖରେ ଗୃହକର୍ମ କରିବ ।"

ବର୍ତ୍ତମାନ ଏଇ ପୁସ୍ତକର ଗଳ୍ପଗୁଡ଼ିକ ବିଷୟରେ ଦି'କଥା ଲେଖୁଛି । ଏ ଗଳ୍ପଗୁଡ଼ିକ ବିଭିନ୍ନ ସମୟରେ ମହାପ୍ରଭୁଙ୍କ ପତ୍ରିକା "ଶ୍ରୀମନ୍ଦିର"ରେ ପ୍ରକାଶିତ ହୋଇଛି ଓ ସାଧାରଣଙ୍କ ଦ୍ୱାରା ଆଦୃତ ହୋଇଛି । ପତ୍ରିକାର ବହୁ ବିଜ୍ଞଙ୍କ ମତେ ପଚାରିଛନ୍ତି, "ଏ ଗଳ୍ପଗୁଡ଼ିକ ସତ ନା ମନଗଢ଼ା ?" "ଆପଣ କ'ଣ ଅମୁକ ଚରିତ୍ରଙ୍କୁ ଦେଖିଛନ୍ତି ?" "ପ୍ରିୟତମା ଗଳ୍ପର ମୁଖ୍ୟ ଚରିତ୍ର କେଉଁଠି ଥାଆନ୍ତି ?" "ଶବନମ୍ କଥା ସତ ?" ଇତ୍ୟାଦି ଇତ୍ୟାଦି । ଅନେକଙ୍କ ପ୍ରଶ୍ନକୁ ଏଡ଼େଇଦିଏ । ମାତ୍ର କେତେକ ଜିଦ୍ ଧରନ୍ତି, "ନ କହିଲେ ହେବନି ?" ଶେଠିରେ କେତେଜଣ ଉତ୍ତର ଗୃହାନ୍ତି, "ଦୟାକରି ଫେରନ୍ତା ଡ଼ାକରେ ଜଣାନ୍ତୁ···।"

ମୋର ବିଶ୍ୱାସ, ପାଠକପାଠିକାମାନେ ମଧ୍ୟ ସେମିତି କୌତୂହଳ ପ୍ରକାଶ କରିବେ ଏଗୁଡ଼ିକୁ ପଢ଼ି । ମୋର ଉତ୍ତର ନିମ୍ନରେ ଦେଉଛି ।

ଗଳ୍ପଗୁଡ଼ିକରେ ଥିବା ଚରିତ୍ର ମଧ୍ୟରୁ କେତୋଟିଙ୍କ ସହ ମୋର ବ୍ୟକ୍ତିଗତ ସମ୍ପର୍କ ପ୍ରତିଷ୍ଠିତ ହୋଇଥିଲା । ସେ ଭକ୍ତମାନଙ୍କ ସହ ମିଶିବାର ସୌଭାଗ୍ୟ ମହାପ୍ରଭୁଙ୍କ ଅପାର କରୁଣାରୁ ମତେ ମିଳିଥିଲା । 'ଭକତ ଉଦନ୍ତି' ଗଳ୍ପ ତ ନିଛକ ସତ୍ୟର ଅବତାରଣିକା । ସ୍ୱର୍ଗତ କ୍ଷେତ୍ରବାସୀ ନାୟକଙ୍କ ଭଳି ଭକ୍ତ ଓ ମହାପ୍ରଭୁ ପଦାଶ୍ରିତ ପରିବାରଟିକୁ ଦେଖିଲେ ଓ ସେମାନଙ୍କର କଥା ଶୁଣିଲେ ପ୍ରଭୁଙ୍କର ଚରଣାରବିନ୍ଦରେ ମନଭ୍ରମର ତ ଶୋଇଯାଏ । 'ପଦଠାକୁର' ସ୍ୱାଙ୍ଗରେ ତ ମୁର୍ଶିଦାବାଦ ନଦୀଆରେ କେତେଦିନ କଟାଇଛି, ଶ୍ରୀ ଜଗନ୍ନାଥଙ୍କ କାମରେ ଯାଇ ସେଇ ଅଞ୍ଚଳକୁ । 'ଏଇ କ୍ଷେତ୍ରରେ' ଶୀର୍ଷକରେ ଶ୍ରୀମନ୍ଦିରରେ ପ୍ରକାଶିତ 'ଅଶାନ୍ତ ପ୍ରେତାତ୍ମା' ତ ସତ୍ୟ ଘଟଣା । 'ପ୍ରିୟତମ'ର ମୁଖ୍ୟ ଚରିତ୍ର ତ ମୋ ପରମାରାଧ୍ୟା । 'ନାଆ-ନାଉରି-ନରେନ୍ଦ୍ର'ତ ଏକ କଳ୍ପନା ବିଳାସ । ମାତ୍ର ଏହାର ଆବେଦନୀୟ ଶୈଳୀ ସବୁରି ପ୍ରାଣରେ (ସବୁ ଭକ୍ତଙ୍କ ପ୍ରାଣରେ କହିଲେ ଅଧିକ ଠିକ୍ ହେବ) ଆଲୋଡ଼ନ ସୃଷ୍ଟି କରେ । କେତେକ ଗଳ୍ପର ଚରିତ୍ର ଦୁଇତିନୋଟି ଚରିତ୍ରକୁ ଉପଜୀବ୍ୟ କରି ଗଢ଼ି ଉଠିଛି । ବିଭିନ୍ନ କାରଣରୁ ଚରିତ୍ରଗୁଡ଼ିକ ଗୋପନୀୟ ରହିବାକୁ

ଗୁହୁଁ ଥିବାରୁ, ମୋର ବିନମ୍ର ଅନୁରୋଧ, ସେମାନଙ୍କ ବିଷୟରେ ମତେ ପଗ୍ଭରି ଅସୁବିଧାରେ ପକାଇବେ ନାହିଁ । ଯଦି ମହାପ୍ରଭୁଙ୍କର ଦୟାଥାଏ, ଚରିତଗୁଡ଼ିକ ଅନୁସନ୍ଧିତ୍ସୁ ପାଠକପାଠିକାଙ୍କ ଆଗୋଚର ରହିବେନି । ଭାଗ୍ୟରେ ଥିଲେ ବୈକୁଣ୍ଠପ୍ରିୟଙ୍କ ଦର୍ଶନ ମିଳେ । ପ୍ରତ୍ୟେକ ଭକ୍ତ ବୈକୁଣ୍ଠ (ଭଗବାନଙ୍କ) ପ୍ରିୟ ଅଟନ୍ତି ।

ପରିଶେଷରେ ଲେଖୁଛି, ଯେଉଁ କେତେଜଣ ସାହାଯ୍ୟ ନ କରିଥିଲେ ଏ ବହିଟି ବାହାରିପାରି ନଥାନ୍ତା, ସେମାନେ ହେଲେ ମୋର ଆତ୍ମୀୟଗଣ, ଯଥା— ଶ୍ରୀ ଅସିତ ମହାନ୍ତି, ଶ୍ରୀ ପୀତାମ୍ବର ମିଶ୍ର ଓ 'ସମାଜ' ଅନୁଷ୍ଠାନର ପ୍ରମୋଦ କୁମାର ମହାପାତ୍ର, ମୋର ଅନୁଜ ଇଂ. ଶ୍ରୀ ଗଣେଶଚନ୍ଦ୍ର ପଣ୍ଡା ଓ ମୋର ଜୀବନ ସଙ୍ଗିନୀ ଧର୍ମପତ୍ନୀ ରେଣୁ ।

ଅନେକ ବନ୍ଧୁ ଓ ଶୁଭେଚ୍ଛୁ ବହି ବାହାରିଲା କି ନା ପଗ୍ଭରି ମତେ ବ୍ୟତିବ୍ୟସ୍ତ କରିପକାନ୍ତି । ମୁଁ ସେମାନଙ୍କୁ ମଧ୍ୟ ଏ ଶୁଭ ଅବସରରେ ସ୍ମରଣ କରୁଛି । ମୋ ଲେଖାପ୍ରତି ସ୍ନେହଶ୍ରଦ୍ଧା ଓ ତଜ୍ଜନିତ ସେମାନଙ୍କର ଆଗ୍ରହ (ବହି ରୂପରେ ଦେଖିବାକୁ) ଏହି ପ୍ରକାଶନ ନିମିତ୍ତ ଦାୟୀ ।

ଆଉ ଜଣକ କଥା ରହିଯାଉଛି । ମାତ୍ର କଲମ ତାଙ୍କ ନାଁ ଲେଖିବାକୁ ଗଲାବେଳକୁ ତାଙ୍କ କଥା ମନେପଡ଼ିଯାଉଛି, "ମୋ ସାହାଯ୍ୟ କଥା ଯେପରି କେହି ନ ଜାଣନ୍ତି ।" ସେ ସାହାଯ୍ୟ ନ କରିଥିଲେ ବହିଟି ବି ବାହାରିପାରି-ନ ଥା'ନ୍ତା । ତାଙ୍କ ପାଖରେ ମୁଁ ଆଜୀବନ ଋଣୀ ।

ଲେଖାଗୁଡ଼ିକ ପଢ଼ି ପାଠକପାଠିକାମାନେ ଯଦି ନୀଳାଚଳନାଥଙ୍କ ଆଡ଼କୁ ଭକ୍ତିପୂତ ହୃଦୟରେ କ୍ଷଣକ ପାଇଁ ଚାଲିପଡ଼ନ୍ତି, ତେବେ ମୋ ଶ୍ରମ ସାର୍ଥକ ହେଲା ବୋଲି ଭାବିବି ।

ମୋ ଗୁରୁଙ୍କର ଜୟ ହେଉ
ମୋ ଗୋବିନ୍ଦଙ୍କର ଜୟ ହେଉ
ମୋ ଗୁରୁଗୋବିନ୍ଦଙ୍କର ଜୟ ହେଉ ।

ବିନୀତ
**ରବୀନ୍ଦ୍ରନାରାୟଣ ମିଶ୍ର**

●



ଏ ଘଟଣାର କେନ୍ଦ୍ର ଚରିତ୍ରଙ୍କୁ ଲେଖକ ନିଜେ ଦେଖିବାର ସୁଯୋଗ ପାଇ ଧନ୍ୟ ହୋଇଛି। ଭାଗ୍ୟରେ ଥିଲେ ପାଠକପାଠିକା ଏହାଙ୍କୁ ଏବେବି ଦେଖିବାର ସୁଯୋଗ ପାଇବେ ଶ୍ରୀକ୍ଷେତ୍ରରେ।

**କା**ଳେ କିଏ ଖିପି ଭାବିବ ବୋଲି ମୁଁ ତାଙ୍କ ସହ ମୋର ମୁହାଁମୁହିଁ ପରିଚୟ ଅଛି ବୋଲି କାହାକୁ ଜଣାଏନି କି ଜାଣିବା ବା ସନ୍ଦେହ କରିବାର ଅବକାଶ ବି ରଖେନି । ଏହାର ଏକମାତ୍ର କାରଣ ସାରା ଦେଉଳ କାହିଁକି ପୁରୁଷୋତ୍ତମ କ୍ଷେତ୍ରରେ ମାଛିଗୋଡ଼ି ଜାଣିଥାଏ, ସେ ପରିଣତ ବୟସରେ ବିବାହ କଲେ । ତାଙ୍କୁ ଦେଖିଲେ ଛତର ଟୋକା କେତେ ଠାଢ଼ିଠାପରି କରନ୍ତି ଦେଉଳରେ । ମାଇପେ ଆଖି ଠରିଠାରି ହୁଅନ୍ତି । ପ୍ରାପ୍ତବୟସ୍କ, ବୃଦ୍ଧମାନେ ମୁରୁକି ମୁରୁକି ହସନ୍ତି । ଗୋଟିଏ ବାକ୍ୟରେ କହିଲେ, ଦେଉଳ ପରିବେଶ ଦୂଷିତ ହୋଇଯାଏ ସମ୍ପୂର୍ଣ୍ଣ ଭାବରେ ସେ ଉପସ୍ଥିତ ହେବା ମାତ୍ରେ ।

ତାଙ୍କର ମୋର ପରିଚୟ କିନ୍ତୁ ବହୁତ ଦିନର । ସେ ମୋ'ଠାରୁ ବୟସରେ ଚାଳିଶବର୍ଷ ବଡ଼ । ସେ ମୋର ରକ୍ତ ସମ୍ପର୍କୀୟ ବା ବନ୍ଧୁବାନ୍ଧବ ବା ଜୀବନର କୌଣସି କ୍ଷେତ୍ରରେ ଏକାଠି ହୋଇଥିବା ଦୃଷ୍ଟିରୁ ପରିଚିତ ନୁହଁନ୍ତି ।

ଗୋଟିଏ ଅଦ୍‌ଭୁତ ପରିବେଶରେ ତାଙ୍କର ମୋର ସମ୍ପର୍କ ସ୍ଥାପିତ ହୋଇ ଯାଇଥାଏ । ଦେଉଳର ମା' ଲକ୍ଷ୍ମୀଙ୍କ ଜଗମୋହନରେ ସେ ଯେଉଁଠି ପ୍ରତିଦିନ ସନ୍ଧ୍ୟାବେଳେ ବସନ୍ତି, ମୁଁ ତା'ର ଠିକ୍ ପାଖାପାଖି ବସି ରହେ । ପ୍ରାୟ ପ୍ରତ୍ୟେକ ଦିନ ସନ୍ଧ୍ୟାବେଳେ ସେ ଆଖିବୁଜି ସେଇଠି ଜପ କରୁଥାନ୍ତି । ଆଖି ଖୋଲିଲେ ସେ ପ୍ରାୟ ମତେ ଦେଖନ୍ତି ଏବଂ ଏମିତି ଅନେକ ଦିନ ଦେଖିଲା ପରେ ମୁଁ ଲକ୍ଷ୍ୟ କଲି ସେ ମୋ' ଆଡ଼କୁ ଚାହିଁ ପ୍ରଥମେ ସ୍ମିତହାସ୍ୟ ଓ ପରେ ପ୍ରକାଶ୍ୟ ଭାବରେ ହସି ପଚାରନ୍ତି, "ଭଲ ଅଛ ବାପା ?" ମୁଁ 'ହଁ' କହେ ।

ପ୍ରାୟ ପ୍ରତ୍ୟେକ ଦିନ ଏମିତି ପରିବେଶରେ ସେ ଓ ମୁଁ , ପରିଚୟ ସୂତ୍ରରେ ବାନ୍ଧିହୋଇ ଯାଇଥାଉ । ଅକସ୍ମାତ୍ କୌଣସି କାମରେ ମୁଁ ବାହାରକୁ ଚାଲିଗଲେ ସେ ମତେ ବହୁତ ମନେ ପକାନ୍ତି । ସନ୍ଧ୍ୟାବେଳେ ମୁଁ ମଧ୍ୟ ଯେଉଁଠି ଥିଲେ ବି ସେଇ ନିର୍ଦ୍ଦିଷ୍ଟ ସମୟରେ ତାଙ୍କୁ ମନେ ପକାଏ । ଆଖିବୁଜି ସେଇ ଦୈନନ୍ଦିନ ଦୃଶ୍ୟଟିକୁ ମନେ ମନେ ଦୋହରାଇ ନିଏ । ମତେ ଲାଗେ ଜପସାରି ସେ ଧୀରେ ଧୀରେ ଆଖି ଖୋଲିଲେ ଏବଂ ମତେ ଚାହିଁ ହସି ହସି ପଚାରିଲେ, "ଭଲ ଅଛ ବାପା ?" ମୁଁ 'ହଁ' ଭରେ । ବାସ୍, ଏତିକି ମନେ ପକାଇ ଦେଲେ ମୋର ମନଟା ଟିକିଏ ବୁଝିଯାଏ ।

ଏଇ ଅଳ୍ପ ପରିଚୟ ଭିତରେ ମୁଁ ତାଙ୍କୁ 'ମା' ବୋଲି ଡାକିବା ଆରମ୍ଭ କରି ଦେଇଥିଲି । ସେ ମଧ୍ୟ ମତେ ପୁଅ ଭଳି ଦେଖନ୍ତି । ଦିନେ ଦିନେ ମତେ ଜପସାରି ପଚାରନ୍ତି, "ଆଜି କିଛି ଖାଇନା କି ବାପା ? ମୁହଁ ଶୁଖିଯାଇଛି ।"

ମୋ'ଠାରୁ ଉତ୍ତର ଶୁଣିଲା ପରେ କହନ୍ତି, "ଛି, ଏଗୁଡ଼ା ପିଲାଳିଆମି । ଘର ସଂସାର କଲେ କେତେ କ'ଣ ହୁଏ । ନ ଖାଇ ନ ପିଇ ଏ ଜାଗାକୁ କେହି କ'ଣ ମନ ଦୁଃଖରେ ଆସେ ? ତା'ଛଡ଼ା ବୋହୂଟା ତ ଅତି ପିଲା । ପିଲାଳିଆ ବୁଦ୍ଧିରେ କ'ଣ ଟିକେ କହିଦେଲା ବୋଲି ରୁଷି କରି ବାହାରି ଆସିଲ ?"

ତା'ପରେ ଆନନ୍ଦ ବଜାରରୁ ମହାପ୍ରସାଦ ଆଣି ତାଙ୍କର ଲୁଗାରଦ୍ଧୀ ଶୁଭ୍ର ହସ୍ତରେ ମତେ ଖୁଆଇ ଖୁଆଇ କହନ୍ତି, "ଆଜିଠାରୁ ଏହି ପବିତ୍ର ମହାପ୍ରସାଦ ଖାଇଲାବେଳେ ମନେ ମନେ ଶପଥ କର, ନ ଖାଇ, ନ ପିଇ ମନ ଦୁଃଖରେ ଏଠିକି ଆସିବନି ।"

ତାଙ୍କ ହାତରୁ ଶେଷ ଗୁଣ୍ଡା ଖାଉ ଖାଉ ମୁଁ କହେ, "ନା ମା', ଆଉ କେବେ ନୁହେଁ ।"

ଜପ କରିସାରିବା ପରେ ସେ ଚକଡ଼ା ଉପରକୁ ଚାଲିଯାଇ ଗୋଟିଏ ନିର୍ଦ୍ଦିଷ୍ଟ ପଥର ଉପରେ ମୁଣ୍ଡିଆ ମାରନ୍ତି । ପ୍ରତ୍ୟେକ ଦିନ ଲକ୍ଷ୍ୟକରେ ସେ ମୁଣ୍ଡିଆ ମାରି ଉଠିଲାବେଳକୁ ତାଙ୍କ ମୁହଁ ଲୁହରେ ଧୋଇ ହୋଇ ଯାଇଥାଏ । ସେ ବହୁତ

ବେଳ କଥା କହି ପାରନ୍ତିନ । ମୁଁ ପଥରଟିକୁ ଗୃହ୍ଣେ ଦେଖେ । କିଛି ଲେଖା ନାହିଁ ।। ସବୁ ଲିଭିଗଲାଣି । ଦିନେ ସାହସ ଧରି ତାଙ୍କୁ ପଗ୍ଚାରି ଯାହା ଉତ୍ତର ପାଇଲି, ସେଥିରୁ ଜାଣିଲି ତାଙ୍କର ସାରା ଜୀବନର କାହାଣୀଟି ।

"ମୁଁ ଏ ଦେଉଳକୁ ବହୁତ ଥର ଆସେ ବାପାଙ୍କ ସାଙ୍ଗେ ପିଲାଟି ଦିନରୁ— ମୋ ହେତୁ ପାଇବା ବେଳୁ ।"

"ସେତେବେଳେ ଠାକୁରଙ୍କୁ ଦେଖିବାକୁ..."

କଥାରେ ବାଧା ଦେଲେ ସେ, "ନା, ଅଧିକାଂଶ ଦିନ ମୁଁ ଠାକୁରଙ୍କୁ ଦେଖେନି । ବାପା ବାଧ୍ୟ ନ କଲେ, ମତେ ଜଗମୋହନରେ ଥିବା କାଠ ପାଖରେ ଟେକ ନ ଧରିଲେ ମୁଁ ଠାକୁରଙ୍କୁ ମୋଟେ ଦେଖି ପାରେନି । ଯେଉଁଦିନ ଦେଖେ ମତେ ଠାକୁରଙ୍କ ମୁହଁ ମୋଟେ ଭଲ ଲାଗେନି, ମତେ କେମିତି ଗୋଟାଏ ଡର ଲାଗେ ।"

କହୁ କହୁ ସେ ଯେମିତି ପିଲା ବୟସର ହୋଇଗଲେ ଓ ପିଲାଙ୍କ ଦରେଖି ସ୍ୱରରେ କହିଲେ, "ବାପା ଘଣ୍ଟା ଘଣ୍ଟା ଧରି ସେଇ କଳାମୁହାଁ ଠାକୁରଙ୍କୁ ଗୃହ୍ଣି କ'ଣ ଗୁଡ଼ାଏ ବୋଲୁଥାନ୍ତି—ମୁଁ ସେତେବେଳେ ଦେଉଳ ବେଢ଼ାସାରା ଘୁରୁଥିବା ମାଙ୍କଡ଼ମାନଙ୍କୁ ଦେଖି ଖୁବ ଖୁସି ହେଉଥିଲି...ତା'ପରେ ବଡ଼ ହୋଇଗଲି । ସେଇ ବାପାଙ୍କ ସାଙ୍ଗରେ କହୁତଥର ପୁଣି ଆସିଥିଲି । ବାପାଙ୍କ ଅଲକ୍ଷ୍ୟରେ ମନ୍ଦିର ଗୃହପଟେ ଥିବା ମୂର୍ତ୍ତିଗୁଡ଼ିକୁ ଦେଖିବାକୁ ମତେ ଖୁବ ଭଲ ଲାଗୁଥିଲା । ଦିନେ ଦିନେ ବାପା ପୂଜାପୂଜି ଶେଷକରି ଆସିଲାବେଳକୁ ଦେଖନ୍ତି ମୁଁ ସେଇ ନ ଦେଖିବା ମୂର୍ତ୍ତିଆଡ଼େ ପଡ଼ା ନ ପକେଇ ଗୃହିଁଛି । ବାପାଙ୍କୁ ଦେଖି ମୁଁ ଲାଜରେ ହାଉଳି ପଡ଼େ । ବେଳେ ବେଳେ ଜିଭ କାମୁଡ଼ି ପକାଏ । ବାପା ମୋତେ ପଗ୍ଚାରନ୍ତି, ମୁଁ ହଡକଥା କହିଦିଏ, ଠାକୁରଙ୍କୁ ଦେଖିବାକୁ ମନ୍ଦିରକୁ ଯାଇଛି ବୋଲି ।"

"ତା'ପରେ ବାହାଘର ହେଲା । ତାଙ୍କ ସାଙ୍ଗରେ ବି ମନ୍ଦିରକୁ ଦୁଇ ତିନିଥର ଆସିଥିଲି ।"

"ମୁଁ କଥାରେ ବାଧା ଦେଇଥିଲି, ଦୁଇ ତିନିଥର ?"

ହସି ହସି ସେ କହିଲେ; "କେଇଟା ଦିନ କି ? ମାତ୍ର ମାସକ ପରେ ମୋ' ମୁଣ୍ଡରୁ ସିନ୍ଦୂରଗାର ଲିଭିଗଲା ଓ ହାତରୁ ଖୋସିନ୍ଦୂର କଡ଼ା ହୋଇଗଲା ।"

ମୋ' ପ୍ରଶ୍ନର ଉତ୍ତରରେ ଦୀର୍ଘନିଃଶ୍ୱାସ ପକାଇ ସେ କହିଲେ, "ହଁ ଏଇଟା ତାଙ୍କ ସ୍ମୃତି ପଥର । ଏଇଠି ସେ ବସିବାକୁ ଖୁବ ଭଲ ପାଉଥିଲେ । ମହାଲକ୍ଷ୍ମୀ, ଗ୍ରହଚକ୍ର ଓ ସତ୍ୟନାରାୟଣ ଉଦନଙ୍କଙ୍କୁ ସେ ଏଇଠୁ ଦେଖୁଥିଲେ । ମତେ କହୁଥିଲେ ଏ ଜାଗାଟା ଖୁବ ଭଲ ଲାଗୁଛି । ଯଦି ଆଗ ଚାଲିଯାଏ, ମୋ' ନାଁରେ ଏଇଠି ଗୋଟାଏ ପଥର‥ "

ତାଙ୍କ ଆଖି ଲୁହ ଛଳଛଳ ହୋଇଗଲା । ମୋ' ସାନ୍ତ୍ୱନାବାକ୍ୟକୁ ଆଡ଼େଇ ଦେଇ ସେ କହିଲେ; "ନା; ନା; ସେମିତି ନୁହେଁ । ମୋ' ପାଣି ଫୋଟକା ବାହାଘର ଜୀବନ ପରେ, ତାଙ୍କ ମୃତ୍ୟୁପରେ, ଗୋଟିଏ ଅଦ୍ଭୁତ ଯନ୍ତ୍ରଣା ଅନୁଭବ କଲି । ପ୍ରତିଦିନ ରାତିଅଧରେ ମତେ ଲାଗେ ସେ ଆସିଛନ୍ତି ଓ ସେଇ ଜାଗାରେ ବସିବାକୁ ମତେ ଡାକୁଛନ୍ତି । ମୁଁ ତାଙ୍କ ପଛେ ପଛେ ଯାଏ । ସେ ସେଇ ପଥର ଉପରେ ବସନ୍ତି; ମତେ ବସିବାକୁ କହନ୍ତି; ମୁଁ ବସେ । ତା'ପରେ ସେ ଉଠନ୍ତି; ଜଗମୋହନକୁ ଯାଆନ୍ତି, ଆମେ ଦି'ଜଣ ଠାକୁରଙ୍କୁ ଦେଖୁ । ହଠାତ୍ ଦେଖେ ସେ ମୋ' ପାଖରୁ ଚାଲି ଚାଲି ରତ୍ନସିଂହାସନ ଆଡ଼କୁ ଯାଉଛନ୍ତି । ମୁଁ ପାଟି କରେ; "ଯାଆନା" "ଯାଆନା" "ଭୋଗ ମାରି ହେବ"—ସେ ଶୁଣନ୍ତିନି ବେଳେ ବେଳେ ପଛରୁ ମୋ' ଆଡ଼କୁ ଚାହିଁ ହସନ୍ତି । ତା'ପରେ ସେଇ ଜଗନ୍ନାଥଙ୍କ ଭିତରେ ମିଶିଯାଆନ୍ତି । ପରଦିନ ରାତିଅଧରେ ସେଇକଥା । ମତେ କହନ୍ତି; କ'ଣ କିଛି ବୁଝିପାରିଲନି ? ହଉ ଚାଲ ଆଜି ଯିବା ।"

ସେ ଓ ମୁଁ ଯାଉ । ସେ ପଥର ଉପରେ ବସନ୍ତି, ପୁଣି ଉଠି ସାତ ପାହାଚ ଦେଇ ଜଗମୋହନକୁ ଯାଇ ଆଳତି ଦେଖନ୍ତି । ପୁଣି ମୋ' ଅଲକ୍ଷ୍ୟରେ ଜଗନ୍ନାଥଙ୍କ ଆଡ଼କୁ ଯାଇ ଶ୍ରୀଅଙ୍ଗରେ ହଜିଯାଆନ୍ତି । ମୁଁ ଘରକୁ ଏକୁଟିଆ ଫେରେ । ରାତିରେ ଶୋଇବାବେଳେ ପ୍ରତ୍ୟେକ ଦିନ ସେ ମୋତେ ସ୍ୱପ୍ନରେ ଦେଖାଦେଇ ପଚାରନ୍ତି, "କିଛି ବୁଝିପାରୁନା ?" ମୁଁ କହେ 'ନା' ।"

ତାଙ୍କର ଏଇ ଅପୂର୍ବ କାହାଣୀ ପ୍ରକାଶ କରିବାକୁ ମୋର ଭାଷା ଅସମର୍ଥ । ସେ ରୂପଲାବଣ୍ୟ, ସେ ଭାବଭଙ୍ଗୀ ଓ ସେ ସ୍ନେହଶୀଳ କଣ୍ଠ—ସବୁ ଯେମିତି ଅପୂର୍ବ ।

ମନ୍ଦିରରେ ତାଙ୍କ ଚାଲିଚଳଣ, ହାବଭାବ ଦେଖି ସମସ୍ତେ ତାଙ୍କୁ ସମ୍ମାନ ଦିଅନ୍ତି ।

ମାତ୍ର ହଠାତ୍ ସେ ଯେଉଁଦିନ ମୁଣ୍ଡରେ ସିନ୍ଦୂର ଲଗାଇ ଖାଲି ହାତରେ ଚୁନାଚୁଡ଼ି ପିନ୍ଧି ଆସିଲେ ସେଦିନ ମନ୍ଦିର ସାରା ତାଙ୍କର କଥା ଚାଲିଲା । ଚୁପ୍‌ଚାପ୍ ଟାହିଟାପରା ଓ ହସିଲି‥‥।

ମୁଁ ସେଇଦିନୁ ଲକ୍ଷ୍ମୀ ମନ୍ଦିରର ସେ ଜାଗା ଛାଡ଼ିଲି । ମତେ ଲାଜ ଲାଗିଲା ତାଙ୍କ ସହ ସମ୍ପର୍କ ରଖିବାକୁ ।

ଗତବର୍ଷ ଠିକ୍ ଏଇ ଦିନ କଥା । ଠାକୁର ଅଣସର ଘରେ ଥାଆନ୍ତି । ଶୁଁ ଖାଁ ଲାଗୁଥିବା ମନ୍ଦିର ଭିତରକୁ ଯାଇ ଜଗମୋହନରେ ପାଦ ଦେଇଛି କି ନାହିଁ, ଦେଖିଲି ସେ ଠିଆ ହୋଇ ଉଦାସ ମନରେ ଏଣିକି ତେଣିକି ଚାହୁଁଛନ୍ତି । ମୁଁ ତାଙ୍କୁ ଦେଖି ବାଟ ଭାଙ୍ଗି ଚାଲିଯାଉଥିଲି । ସେ ମତେ ଡାକିଲେ, ''ଶୁଣ, ବାପା !''

ମୁଁ ରହିଗଲି । ତାଙ୍କ ଆଖିରୁ ଧାର ଧାର ଲୁହ ଝରିପଡ଼ିଲା । ପଚାରିଲି ''କ'ଣ ହେଲା ? କାହିଁକି କାନ୍ଦୁଛନ୍ତି ?

''ତାଙ୍କ ଦେହ ଭଲ ନାହିଁ । ଔଷଧ ପାଇଁ ଆସିଥିଲି ।''

ଘୃଣାରେ ମୋର ମନ ଅତିଷ୍ଠ ହୋଇ ଉଠୁଥାଏ । ଚାରିଆଡ଼କୁ ସତର୍କ ଦୃଷ୍ଟି ଦେଲି କାଳେ କିଏ ଦେଖୁଥିବ ମୁଁ ଏହି ସ୍ତ୍ରୀ ଲୋକ ସଙ୍ଗେ କଥାବାର୍ତ୍ତା ହେଉଛି ବୋଲି ।

ହଠାତ୍ ସେ ମୋ' ହାତ ଧରି ପକାଇ କହିଲେ, ''ତାଙ୍କୁ ଥରେ ଦେଖିବାକୁ ଯିବନି ବାପା ?

ମୁଁ କହିଲି, 'ନା, ଅଜି ବେଳ ନାହିଁ । ପରେ ଯିବି । ମୋ' ହାତକୁ ଟାଣି ଆଣିଲି ତାଙ୍କ ହାତରୁ ଜୋର୍ କରି ।

ସେ ମୋ' ଓଠ ଧରି ପକାଇଲେ । "ମନା କରନି ବାପା ସେ ତୁମକୁ ଖୋଜୁଥିଲେ ।"

—"ମତେ ? ମୁଁ ତ ତାଙ୍କୁ ଜାଣେନା ।"

—'ସେ ଜାଣିଛନ୍ତି । ତୁମ ନାଁ ଗାଁ ସବୁ କହୁଛନ୍ତି । ତୁମ ଗାଁ ଗୋଟାଏ ନଈକୂଳରେ । ସେଠି ତୁମ ଘର ପାଖରେ କୁଞ୍ଜବିହାରୀଙ୍କ ମନ୍ଦିର ଅଛି । ସେ ମନ୍ଦିରର ରାଧାରାଣୀଙ୍କ ମୁହଁଟି କେତେ ସୁ ର ! ନୁହେଁ ?"

ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କେବେହେଲେ ଆମ ଗାଁ କଥା ମୁଁ ତାଙ୍କୁ କହିନି । ସେ କେମିତ ଜାଣିଲେ ?

ବାଧ୍ୟ ହିଲି ପରେ ତାଙ୍କ ସ୍ୱାମୀଙ୍କୁ ଦେଖିବାକୁ ପଛେ ପଛେ ଗଲି । ମନ୍ଦିରଠାରୁ ଅଳ୍ପ ଦୂରରେ ଗୋଟିଏ ଛୋଟ ଅଥଚ ସୁନ୍ଦର ଘରେ ସେ ରହୁଥାନ୍ତି ।

ଦୁଆରମୁହଁରେ ପହଞ୍ଚି ସେ ଧୀର ସ୍ୱରରେ କହିଲେ, "ଶୁଣୁଚ, ଦୁଆର ଖୋଲ, ଦେଖ କିଏ ଆସିଛନ୍ତି । ତୁମ ଜର କେତେ ଅଛି ?"

ମୁଁ ଭିତରୁ କିଛି ଶୁଣିପାରିଲିନି । ମାତ୍ର ସେ କବାଟରେ ହାତ ଦେଇ ଠେଲି ଦେଇ ଦେଇ କହିଲେ, "ବଇଦଠୁ ଔଷଧ ପାଇବାକୁ ଡେରି ହେଲା । ତା' ଛଡ଼ା ତୁମେ ତ କହିଥିଲ କେବେ ଦେଖାହେଲେ ସ୍ୱାଙ୍କୁ ସାଙ୍ଗରେ ଆଣିବାକୁ । ତୁମେ ମୁଣ୍ଡରେ ପାଣି ଦିଆଇଥିଲ ତ ?"

ଘର ଭିତରେ ପଶି ଦେଖିଲି, ଜଣେ ଘୋଡ଼ାଘାଡ଼ି ହୋଇ ଶୋଇଛନ୍ତି । ନୂତନ ପରିବେଶରେ ମୁଁ ଟିକେ ଅସ୍ୱସ୍ତି ଅନୁଭବ କରୁଥିଲି । ସେ ମତେ ବସିବାକୁ କହିଲେ ଖଟ ପାଖରେ ପଡ଼ିଥିବା ଚୌକିରେ ଓ ନିଜେ ଶୋଇଥିବା ସ୍ୱାମୀଙ୍କ ପାଦକୁ ଆଉଁସି ଚମକି ପଡ଼ି କହିଲେ, "ଏଁ, ଏତେ ତାତି ! ଓଃ, ଔଷଧ ଦେଇଦିଏ । ହେ ମା, ମୁଁ କ'ଣ କରିବି ।"

ସେ ମୁହଁପାଖରୁ ଲୁଗା କାଢ଼ି କାନରେ ବାନ୍ଧିଥିବା ଔଷଧ ଦେବାମାତ୍ରେ ମୁଁ ଚିତ୍କାର କରି ଉଠିଲି ସେ ଦୃଶ୍ୟ ଦେଖି । ଗୋଟାପଣରେ ମୁଁ ଥରିବାକୁ ଲାଗିଲି ।

ସେ କହିଲେ "ଡରନା । ତୁମ କଥା ସେ ମତେ କେତେଥର କହିଛନ୍ତି । ମୁଁ ସବୁ କହିବି । ଔଷଧଟା ଦେଇଦିଏ ।"

ପାଟିରେ ଔଷଧ ଦେଇ ସେ ପୁଣି ସ୍ୱାମୀଙ୍କୁ ଘୋଡ଼ାଇ ଦେଲେ । ତା' ପରେ ଲୁଗା ଭିତରେ ହାତ ପୁରାଇ କ'ଣ ଗୋଟାଏ କାଢ଼ି ଆଣିଲେ । ଦେଖିଲି, ସୁନା ବଇଁଶୀଟାଏ । କହିଲେ, "ଏତେକରି କହୁଥିଲି, ବଂଶୀ ବଜେଇ ଆସ ହାଲିଆ ହୁଅନା । ଦେହ ତାତି ବଢ଼ିଯାଇଛି, ମୋ' କଥା ମାନୁନା"...

ତା' ପରେ ସନ୍ତର୍ପଣରେ ବଂଶୀଟିକୁ ତାଙ୍କ ମୁଣ୍ଡରେ ଓ ମୋ' ମୁଣ୍ଡରେ ଲଗାଇ ସେ ସୁନ୍ଦର ଭାବେ ସଜା ହୋଇଥିବା ଜାଗାଟି ଉପରେ ରଖିଦେଲେ ।

ତା' ପରେ ସେ କଥାବାର୍ତ୍ତା ଆରମ୍ଭ କଲେ ଶୂନ୍ୟ ସାଙ୍ଗରେ ମୁଁ ଗୋଟାଏ ପଟୁ ଯାହା ଶୁଣିଲି, ସେ କଥା ଲେଖୁଛି ।

"........."

"କାଲି ତୁମେ ଭଲ ହୋଇଯିବ । ତୁମକୁ ଦେଖାଇବାକୁ ସ୍ୱାଙ୍କୁ ଆଣିବି । ତା' ପରଦିନ ତୁମେ ରଥରେ ଯିବ । ଦେଖ, ରଥଟା କେଡ଼େ ସୁନ୍ଦର ହେଇଛି ।

ଘରକଣରେ ଥାଖିଦ୍ଦଲସା ଜରକାମ ଓ ଫୁଲରେ ସଜା ହୋଇଥିବା ରଥଟି ଦେଖିଲି ।

ସେ ପୁଣି କ'ଣ ଶୁଣିଲେ ଓ ମତେ ପଚାରିଲେ, "ତୁମ କୁଞ୍ଜବିହାରୀଙ୍କର କାଳେ ପ୍ରତିବର୍ଷ ଏମିତି ରଥ ହୁଏ ?"

ମୁଁ 'ହଁ' କହିଲି । ତା' ପରେ ସେ କହିଲେ, "......ସବୁ ପଥି ଖାଇନା, ହିଉ ଦଉଛୁ, ଯାହା ବଳିଛୁ । ତୁମେ ବ୍ୟସ୍ତ ହୁଅନା ।"

ପଥୁରିରୁ ସେ ମତେ ଆଣି ଗୋଟାଏ ଆମ୍ବ ଦେଲେ । କି ଅପୂର୍ବ ସ୍ୱାଦୁ !

ମୁଁ ଇନ୍ଦ୍ରଜାଲରେ ଗୁଡ଼େଇ ହୋଇଯାଉଥିଲି । ହଠାତ୍ ସେ ପୁଣି କିଛିବେଳ ଶେଯରେ ଶୋଇଥିବା ସ୍ୱାମୀଙ୍କ ମୁହଁପାଖୁ ଲାଗିଆସି କ'ଣ ଶୁଣିଲା ପରେ କହିଲେ, "ଟିକେ ଚଉକରେ ବସିବ ! ଭଲ ଲାଗୁନ ଶୋଇ ଶୋଇ ! ହଉ ।"

ଲୁଗା ଭିତରୁ ସେ ତାଙ୍କର ସ୍ୱାମୀଙ୍କୁ ଆଣି ମୋ' ଆଗରେ ରୂପା ଚଉକରେ ବସେଇଲେ । ଏଥର ସାମନା ସାମନି ହୋଇଗଲେ ।

ହଠାତ୍ ସେ ସେମିତି ଶୁଣିସାରି କହିଲେ, "ନା, ସେ ଡରୁନ ।...ଓଃ, ପୁଣି ବଇଁଶୀ ।"

ବଇଁଶୀଟି ସେ ଅଣି ଖଣ୍ଡିଆ ହାତ ଉପରେ ରଖିଦେବାମାତ୍ରେ ଘରଟି ଅପୂର୍ବ ସ୍ୱରରେ ଝଙ୍କୃତ ହୋଇ ଉଠିଲା ।

ଶୁଣୁ ଶୁଣୁ ସେ ଲୋଟି ପଡ଼ିଲେ ରୂପାଚଉକି ଉପରେ ବସିଥିବା କଳାଠାକୁର ଜଗନ୍ନାଥଙ୍କ ପାଦତଳେ ।

ମୁଁ ବି ଲୋଟି ପଡ଼ିଲି ତାଙ୍କ ଚରଣ ତଳେ ଓ ଲୁହଭରା ଆଖିରେ ପ୍ରାର୍ଥନା କଲି, "ମା, ମତେ କ୍ଷମା କର ।"

ସେ ମତେ ତଳୁ ଉଠେଇ ଆଉଁସି ଦେଲେ ।





ସ୍ୱର୍ଗତ ଅଧ୍ୟାପକ କ୍ଷେତ୍ରବାସୀ ନାୟକଙ୍କ ଜୀବନ ଚରିତ। ଶ୍ରୀଜଗନ୍ନାଥାଶ୍ରୟୀ ଏଇ ପରିବାରଟିକୁ ଦେଖିଲେ ପ୍ରଭୁଙ୍କ ପାଦପଦ୍ମରେ ଭକ୍ତି ବହୁଗୁଣିତ ହୋଇଯାଏ।

**ବ**ଡ଼ ଡାକ୍ତରଖାନାର ଖଟିଆ ଉପରକୁ ଝୁଙ୍କିପଡ଼ି ତାଙ୍କର ଅସ୍ପଷ୍ଟ କଥା ଶୁଣିବାକୁ ମୁଁ ଚେଷ୍ଟା କଲି ସେଦିନ । କାରଣ, ତାଙ୍କଠାରେ କଥା କହିବାର ଶକ୍ତି ନ ଥିଲା । କେତେ ମାସ ବିଛଣାଲାଗି ହୋଇ ରହିବା ଫଳରେ ଓ ଦୁରାରୋଗ୍ୟ ରୋଗର ଗ୍ରୁଇ ତାଙ୍କୁ ସମ୍ପୂର୍ଣ୍ଣ ଗ୍ରାସ କରିଥିବାବେଳେ ତାଙ୍କର ଜୀବନୀଶକ୍ତି କ୍ରମଶଃ ନିଃଶେଷ ହୋଇଯାଉଥିଲା । ମୋ କାନଟିକୁ ମୁଁ ପ୍ରାୟ ତାଙ୍କ ମୁହଁ ପାଖକୁ ନେଇ ଲଗାଇଦେଲି । ସେ ଯାହା କହିଲେ ଶୁଣି ସାରିବା ପରେ ମୋ ପାଟିରୁ ହଠାତ୍ ବାହାରିପଡ଼ିଲା, "ସତେ !"

—'ହଁ', ସେ କହିଲେ । "ଏଇ ଦିନେ ଦି'ଦିନ ଭିତରେ ସେ କହିଥିଲେ, ଜଗନ୍ନାଥଙ୍କ କିନିଷ ନେଇ ଜଣେ ତୁମ ପାଖରେ ପହଞ୍ଚିବେ ।"

ତାଙ୍କ ମୁହଁ ଉଜ୍ଜ୍ୱଳ ହୋଇଉଠୁଥିଲା । ରୋଗର ଶୁଷ୍କ ମରୁଭୂମିରେ ଆଶାର କ୍ଷୀଣ ଜଳଧାରଟିଏ ସ୍ପଷ୍ଟ ବାରି ହୋଇପଡ଼ୁଥିଲା । ମତେ ଜଣାପଡ଼ିଲା ସେ ଯେମିତି ବହୁତ କଥା ବଖାଣିଯିବାକୁ ଚାହାନ୍ତି, ମାତ୍ର ଦୁର୍ବଳତା ତାଙ୍କୁ ବାଧା ଦେଉଛି । ତାଙ୍କ ଆଖି ଦୁଇଟି କିନ୍ତୁ ମତେ ବହୁତ କଥା କହିଯାଉଥିଲା । ଯେମିତି ସେ ମତେ ପାଇ କୋଟିନିଧି ପାଇଛନ୍ତି ।

ସେଦିନ ଥିଲା ୧୯୮୭ ମସିହା ଜାନୁଆରୀ ମାସ ତେଇଶ ତାରିଖ ।

ମୁଁ ସେତେବେଳକୁ ସାଙ୍ଗରେ ନେଇଥିବା ଦୁର୍ଲଭ ପଦାର୍ଥ ତାଙ୍କ ବଢ଼ାଇଥିଲି ହାତକୁ ବଢ଼େଇ ଦେଇ କହିଥିଲି, ମୁଣ୍ଡ ତଳେ ପବିତ୍ରତାର ସହ ରଖିଦେବାକୁ ।

ଦୁର୍ଲଭ ପଦାର୍ଥଟିକୁ ମୁଁ ବହୁଦିନ ତଳେ ସାଇତି ରଖିଥିଲି । ସାଇତି ରଖିବାର ଦିନଟି ଥିଲା, ଛଅବର୍ଷ ତଳର ସ୍ନାନପୂର୍ଣ୍ଣମୀ ରାତିରେ ମହାପ୍ରଭୁଙ୍କ ଚିତ୍ରରେଖା ବାହାର କରିବାବେଳେ ସନ୍ତର୍ପଣରେ ସଂଗ୍ରହ କରିଥିବା ଓଳୁଅ । ଯାହାର ଅଠାରେ ଚିତ୍ରରେଖା ମହାପ୍ରଭୁଙ୍କ ଶ୍ରୀମୁଖରେ ବସାଇ ଦିଆଯାଇଥାଏ ।

ଭାଗ୍ୟରେ ମିଳିଥିଲା ପ୍ରଭୁ ସେବା । ସ୍ନାନପୂର୍ଣ୍ଣମୀରେ ହାତୀବେଶ ସାରି ପ୍ରଭୁ ବିଜେ କରିଥା'ନ୍ତି, ଗୋଟିପହଣ୍ଡିରେ ଅଣସର ଘରକୁ । ସବମୋଟ ବର୍ଷକ ଭିତରେ ମହାପ୍ରଭୁ ଶ୍ରୀ-ଭଉଣୀ-ସୁଦର୍ଶନ-ମଦନମୋହନଙ୍କ ସମେତ ଛଅଥର ପହଣ୍ଡି ବିଜେ କରିଥାଆନ୍ତି । ପ୍ରଥମେ ପ୍ରଥମେ କୋଉଟା ଧାଡ଼ି ପହଣ୍ଡି ଆଉ କୋଉଟା ଗୋଟି ପହଣ୍ଡି ମନେ ରଖିବାକୁ ଅସୁବିଧା କରିବାକୁ ହେଉଥିଲା । ପରେ ମହାପ୍ରଭୁ ଯେମିତି ନିଜେ ଦୟାକରି ସୂତ୍ରଟି ବଢ଼େଇଦେଲେ, "ଦେଖ, ଯେତେବେଳେ ଆମେ ସମସ୍ତେ ଭକ୍ତମାନଙ୍କ ପାଖକୁ ବିଜେ କରୁଁ, ଆମ ତର ସହେନ । ରତ୍ନସିଂହାସନ ବା ବଡ଼ଦେଉଳର ଚକା ଉପରୁ ଆମେ ସବୁ ଧାଡ଼ି ଧାଡ଼ି ହୋଇ ବାହାରିପଡ଼ୁ । ଜଣେ ସ୍ନାନବେଦୀ ବା ରଥ ଉପରେ ନ ପହଞ୍ଚୁଣୁ ଆଉ ଜଣେ ପାଦ ବଢ଼େଇଦିଏ ଭକ୍ତଖେଳା ହୋଇ । ଏଇଟା ଧାଡ଼ି ପହଣ୍ଡି, ଧାଡ଼ି ଧାଡ଼ି ଆମେ ଚାଲିଯାଉ ଉଦ୍‌ଗ୍ରୀବ ହୋଇ ରହିଥିବା ଲକ୍ଷ ଲକ୍ଷ ଆଶ୍ରିତ, ଦଳିତ, ପତିତ ଓ ନିଷ୍ପେଷିତଙ୍କ ପାଇଁ । ଆଉ ଗୋଟି ପହଣ୍ଡି ? ଯେତେଥର ସେଇ ପ୍ରାଣର ପ୍ରାଣ ଭକ୍ତମାନଙ୍କ ପାଖରୁ ଫେରୁ ମନ୍ଦିର ଭିତରେ ନିଜ ଅସ୍ଥାନ ବା ରଥ ଉପରକୁ, ସେତେଥର କୁଣ୍ଠିତ ଚିତ୍ତରେ ଭକ୍ତମାନଙ୍କୁ ଛାଡ଼ି ଫେରୁ । ସ୍ନାନବେଦୀ ବା ରଥ ଉପରୁ ଜଣେ ବାହାରି ମନ୍ଦିର ଭିତର ରତ୍ନସିଂହାସନ ବା ଅଣସର ଘରେ ରୁହିଁ ହେବା ପରେ ଆମ ଭିତରୁ ଆଉ ଜଣେ ବିଜେ କରନ୍ତି । ଭକ୍ତଙ୍କୁ ଛାଡ଼ି କୁଣ୍ଠିତ ହୃଦୟରେ ଗୋଟି ଗୋଟି କରି କୁଣ୍ଠେଇ କୁଣ୍ଠେଇ ଆସୁଥିବାରୁ ଏହାକୁ କହନ୍ତି ଗୋଟି ପହଣ୍ଡି ।"

ସେଇ ଦୁଇତିନିବର୍ଷ ତଳେ ଗୋଟିପହଣ୍ଡିରେ ଆସି ଦେବଠାକୁର ଅଣସରଘରେ ବିଜେ କରିବା ପରେ ଦଇତାମାନେ ଯେତେବେଳେ ତିନିଦିଅଁଙ୍କର ଶ୍ରୀମୁଖରୁ ଚିତ୍ରରେଖା ଉଲଗିକରି ଭଣ୍ଡାରମେକାପକୁ ମୋ ଉପସ୍ଥିତିରେ ମଣାଇ ଦେଉଥିଲେ, ଚିତ୍ରରେଖାରୁ ଝଡ଼ିପଡ଼ୁଥିବା ଓଳୁଅ ଗୋଟେଉ ଗୋଟେଉ ପଶୁରିଥିଲି,

'ସେ ଓସ୍ତୁଅ କୋଉଥିରେ ଲଗିବ ? ଆନନ୍ଦ ଗଦଗଦ ହୋଇ ବୁଢ଼ା ଦଇତା ସେଦିନ କହୁଥିଲ, "ବାବୁ, କେଉଁଥିରେ ନ ଲଗିବ ଏ ଦୁର୍ଲଭ ପଦାର୍ଥ ? ହାତରେ ତେଉଁରିଆ କରି ପିନ୍ଧ; ରୋଗବାଧୁକରେ ବାଟିକରି ତୁଣ୍ଡରେ ଦିଅ; ଫଳ ଦେଖିବ, ଆଉ ପ୍ରଭୁ କୃପା ଜାଣିବ ।"

ଫଳ ଦେଖିଥିଲି ଆଉ ପ୍ରଭୁ କୃପା ଜାଣିଥିଲି ଅଳ୍ପ କେତେଦିନ ପରେ । ପଡ଼ିଶାଘର ଓଭରସିଅରଙ୍କ ଅନ୍ଧୁଡ଼ିଉଠା ପୁଅଟି ସେଦିନ ବିଛଣାରେ ମିଶିଯାଇଥିଲା ଜ୍ୱର ଓ ଝାଡ଼ା ପ୍ରକୋପରେ । ସବୁ ଔଷଧ ସେତେବେଳକୁ ହାର ମାନିଯାଇଥିଲା, ବିକଳ ହୋଇ ସ୍ତ୍ରୀ ଆସି ଜଣାଇଲା "······କହୁଥିଲ, ପ୍ରଭୁଙ୍କ ମସ୍ତକରୁ ଝଡ଼ିପଡ଼ିଥିବା ଓସ୍ତୁଅ ଅଛି······ଟିକିଟି ବଡ଼ କଷ୍ଟ ପାଉଛି·········ଘରେ କାନ୍ଦିବୋବାଳି······ ଦିଅନ୍ତନି ?"

ବୁଢ଼ା ଦଇତା କଥା ମନେପଡ଼ିଲା । ଓସ୍ତୁଅ ବଢ଼େଇଦେଇ ବାଟିକରି ପିଲା ପାଟିରେ ଦେବାକୁ କହିଲି । ମହାପ୍ରଭୁଙ୍କ କୃପାରୁ ଟିକିମୁହଁରେ ପୁଣି ହସଫୁଲ ସେଦିନ ଫୁଟି ଉଠିଥିଲା । ସବୁରି କଣ୍ଠରେ ସେଦିନ ପ୍ରଭୁର ପ୍ରଶଂସା ଶୁଣି ମୋ ମନ କୁଣ୍ଢେମୋଟ ହୋଇଯାଇଥିଲା ।

ସେଇ ଓସ୍ତୁଅ ଓ ପ୍ରଭୁ ଶ୍ରୀଅଙ୍ଗରୁ ବାହାରିଥିବା କେତେକ ପଦାର୍ଥ ସେଦିନ ବଢ଼େଇ ଦେଇଥିଲି ବଡ଼ଝିଅ ଲଚ୍ଛି ହାତରେ କଟକ ବଡ଼ ଡାକ୍ତରଖାନାର ଭେଟିକ ଓ୍ୱାର୍ଡ଼ରେ ।

ଆମେ ସେଦିନ ଯେତେଜଣ ଯାଇଥିଲୁ, ଅଳ୍ପ ସମୟପରେ ବିଦାୟ ନେଲୁ, କାରଣ ରୋଗୀଙ୍କ ଆଖିପତା ମୁଦିହୋଇ ଆସୁଥିଲା, ଆମେ ଚାହୁଁଥିଲୁ ସେ ବିଶ୍ରାମ ନିଅନ୍ତୁ, ଶୀଘ୍ର ସୁସ୍ଥ ହୋଇଉଠନ୍ତୁ ।

ଆଶ୍ଚର୍ଯ୍ୟର କଥା, ସେଦିନ ପହଞ୍ଚିବାରୁ ଦିନେ ଦି'ଦିନ ଆଗରୁ ଜଣେ କହିଥିଲେ "······ଜଗନ୍ନାଥଙ୍କ ଅଙ୍ଗଲାଗି ଜିନିଷ ନେଇ ଜଣେ ପହଞ୍ଚିବେ ଏଇ ଦି'ଦିନ ଭିତରେ । ତା'ପରେ ଆପଣ ଭଲ ହୋଇଯିବେ ।"

ଲବଣ୍ୟଦେବୀ ବିକଳ ହୋଇ ସ୍ମୃତିଚାରଣ କରି କହିଲେ "କ'ଣ ଭଲ ହେଲେ ଆଉ ? ଆରପାରିକୁ ତ ଚାଲିଗଲେ ।"

ତାଙ୍କ ଚାଲିଯିବାର କେତେଦିନ ପରେ ମୁଁ ଯାଇଥିଲି ତାଙ୍କ "ସାରସ୍ୱତ ନିଳୟ"କୁ । ଏଇ କେତେପଦ କଥା କହି ଚୁପ ହେବା ଅବସରରେ ମୁଁ ଲକ୍ଷ୍ୟକଲି ଲବଣ୍ୟଦେବୀଙ୍କୁ ,ତାଙ୍କ ଅଲକ୍ଷ୍ୟରେ । ଲବଣ୍ୟଙ୍କ ମୁହଁରୁ କିଏ ଯେମିତି ସବୁ ଲବଣ୍ୟତକ ପୋଛି ନେଇଛି । ମୁଣ୍ଡର ସିନ୍ଦୂର ଆଉ ଜଳୁଉଠୁନି । ମୁହଁରେ କଳା

ଛୁଇ ବାର ହୋଇପଡ଼ୁଛି । ଏଇ ଦିନ କେଇଟା ଭିତରେ ମୁଣ୍ଡର ବାଳଗୁଡ଼ିକ ବେଶ୍ ହିତଶିଖ ହୋଇ ଧଳା ହୋଇଗଲଣି । ସଂସାର-ଆକାଶରେ ତାଙ୍କର ମଳାକାନ୍ତର ମୁହଁଟିକୁ ଆଉ ଚାହିଁହେଉନି । ସେ ମଉଳିପଡ଼ିଛନ୍ତି । କିନ୍ତୁ ପର ଲାଗି ନ ଥିବା ଦ'ଟିଅ ଆଉ ପୁଅଟିକ ତ ପୁଣି ପରଲଗା କରାଇବେ । ତେଣୁ ସବୁ ଦୁଃଖ, ସବୁ ଯନ୍ତ୍ରଣା, ସବୁ କଷ୍ଟକୁ ଭିତରେ ଭିତରେ ଚାପିଦେଇ ଚେଷ୍ଟା ଚଳେଇଛନ୍ତି । ସେମାନଙ୍କୁ ନିଜ ଆହାର ଖୋଜିବାର ଶକ୍ତି ଦେଇ ବସାରୁ ଉଡ଼ାଇଦେବାକୁ । ମନରୁ ତାଙ୍କ କଥା ପୋଛି ହେବନି । ସେ ମୁରୁଛି ପାରୁ ନାହାନ୍ତି ତାଙ୍କର ସ୍ମୃତି । ମୁରୁଛି ପାରୁନାହାନ୍ତି ତାଙ୍କ ପ୍ରାଣର ପ୍ରାଣ ଜନ୍ମଜନ୍ମାନ୍ତରର ସାଥୀ ତାଙ୍କର ହୃଦୟସ୍ଥ ଦେବତା ତାଙ୍କର କ୍ଷେତ୍ରବାସୀ ନାୟକଙ୍କୁ ।

ମହାପ୍ରଭୁଙ୍କର ଏ ପରିବାର ସହିତ ସମ୍ପର୍କ ଯେମିତି ଏ ଯୁଗର ଅବିଶ୍ୱାସ କରିବା ଭଳି କାହାଣୀଟିଏ । ବଖାଣି ବସିଲେ ପୋଥିଟିଏ ହେବ, ନ ବଖାଣିଲେ ପ୍ରଭୁ ମହିମା ଲୋକଲୋଚନ ବାହାରେ ରହିଯିବ । କଳିକାଳରେ ଏମିତି କ'ଣ ଲୀଳାଖେଳା ଲୀଳାମୟ କରନ୍ତି ? ଏମିତି କ'ଣ ଭକ୍ତ ଏ କାଳରେ ଅଛନ୍ତି ? ସବୁର ସଂକ୍ଷିପ୍ତ ଉତ୍ତର 'ହଁ' । ଆର୍ତ୍ତିତ ଭକ୍ତର ଆଦର ଭିତରେ ସେ ବନ୍ଦୀ ହୋଇପଡ଼ି ରହନ୍ତି । ସ୍ନେହର ଶାଗ ଖାଇବାକୁ ବିଦୁର ଘରକୁ ତରତର ହୋଇ ପାଦପକେଇ ଯାଉ ଯାଉ ଦାମ୍ଭିକ ଦୁର୍ଯ୍ୟୋଧନକୁ କହନ୍ତି, "ନା ଦୁର୍ଯ୍ୟୋଧନ, ଆଜି ତୁମ ପ୍ରାସାଦରେ ମଣୋହି ହୋଇପାରିବନି । ବିଦୁର ଚାହିଁଛି···ବିକଳ ହୋଇ ସ୍ୱାମୀ ସ୍ତ୍ରୀ ମୋ' ପଥ ଚାହିଁଛନ୍ତି ବ୍ୟାକୁଳ ହୋଇ···ତା' କୁଣ୍ଡିଆ ମତେ ବାଇଅକରି ପକାଇଲାଣି···ତୁମ ନଅରରେ ଆଉ ଦିନେ ।"

କ୍ଷେତ୍ରବାସୀଙ୍କ ବ୍ରହ୍ମପୁର କୁଣ୍ଡିଆ ସେଦିନ ପୂରି ଉଠିଥିଲା, ଯେଉଁଦିନ ପୁରୀର ପୁଷ୍ପାଳକ ସେବକ ଶ୍ରୀ କାଶୀନାଥ ସିଂହାରୀ ପହଞ୍ଚି ଯାଇଥିଲେ ସାଙ୍ଗରେ ଚକାନୟନଙ୍କୁ ଧରି । ସେ ମସିହା ଥିଲା ୧୯୬୬ ମସିହା । ତା' ପୂର୍ବରୁ ସିଂହାରୀଏ ବହୁତଥର କହିଥିଲେ, "ଘରେ ତୁମ ପ୍ରାଣଦେବତା ଚକାନୟନଙ୍କୁ ରଖ, ପୂଜାକର ।" ଆଡ଼େଇ ଦେଇଥିଲେ ସ୍ୱାମୀ ସ୍ତ୍ରୀ "ପାରିବୁନି···ତାଙ୍କ ନୀତି ବଡ଼ ଛୁଟିକୁଟିଆ···ସେବାରେ ତ୍ରୁଟି ହୋଇଯିବ···ଅପରାଧ ହବ···କ୍ଷମା କରନ୍ତୁ ।" ଏମିତି କଥାବାର୍ତ୍ତା ହୋଇଥିଲା ପୁରୀରେ । ତା' ଆଗରୁ ଦୁଇ ତିନିବର୍ଷ ତଳେ ସିଂହାରୀଏ ଆଣି ଦେଖାଇଥିଲେ ମହାପ୍ରଭୁଙ୍କ ଚୋଟିଏ ବିଗ୍ରହକୁ । ଗ୍ରହଣ କରିବାକୁ କିନ୍ତୁ ମନା କରିଥିଲେ ସ୍ୱାମୀ-ସ୍ତ୍ରୀ । ବିଗ୍ରହ ବି ମନପସନ୍ଦ ହୋଇ ନ ଥିଲେ । ଭାବଗ୍ରାହୀଙ୍କ ମୂର୍ତ୍ତି ଭାବରେ ବୁଡ଼େଇ ଦେଇପାରୁ ନ ଥିଲା । ତେଣୁ ସେତିକିରେ ମହାପ୍ରଭୁଙ୍କୁ ଭକ୍ତଘର ବିଜେ ଅଧ୍ୟାୟ ସରିଗଲା ବୋଲି କ୍ଷେତ୍ରବାସୀ ଓ ଲାବଣ୍ୟ ଭାବିଲେ ।

କିନ୍ତୁ ସେ କ'ଣ ଛାଡ଼ିବା ଲୋକ । ଯାହା ଘରେ ବିଜେ କରିବାକୁ ମନ କରିବେ, କେହି ବାଧା ଦେଇପାରିବନି ତାଙ୍କୁ । ଅଧିକାଂଶ ବେଳେ ସେ ଭକ୍ତଙ୍କ ଡୋରରେ ଟାଣିନ୍ତି । ଭକ୍ତ ତାଙ୍କୁ ଭକ୍ତିଡୋରରେ ଟାଣେ । ଅଣଆୟତ୍ତ ହୋଇ ସେ ଦଉଡ଼ନ୍ତି ଭକ୍ତପାଖକୁ । ସେଇ ୧୯୭୬ ମସିହା ଅଗଷ୍ଟ ମାସରେ ଦିନେ ବ୍ରହ୍ମପୁରରେ କ୍ଷେତ୍ରବାସୀ ସିଂହାଣୀଙ୍କ ଚିଠି ପାଇଲେ, "ବିଗ୍ରହ ନେଇ ଦିନ ଦଶଟା ଏଗାରଟା ବେଳେ ପହଞ୍ଚିବ ।"

ସ୍ୱାମୀ-ସ୍ତ୍ରୀ ଦୁହେଁ ଅଧ୍ୟାପକ ଅଧ୍ୟାପିକା ଓଡ଼ିଆ ବିଭାଗର । କଲେଜରୁ ଛୁଟି ନେଲେ ବାଧ୍ୟହୋଇ । ଠାକୁର ଆସିବେ । ନୂଆଲୁଗା ଖଟୁଲି ପ୍ରସ୍ତୁତକରି ରଖିଲେ । ମାତ୍ର କାହିଁ ? ସେ ତ ଆସିଲେନି । ଦୁହେଁ ସ୍ଥିର କଲେ ସେ ଅନ୍ତରରେ ତ ଇଚ୍ଛା ନାହିଁ ତାଙ୍କୁ ପାଖେଇ ଆଣିବାକୁ । ତେଣୁ ସେ କାହିଁକି ଆସିବେ ? ଏଗାରଟା ବେଳେ ସିଂହାଣୀଙ୍କ ଚିଠି ପହଞ୍ଚିଲା···"ଅସୁବିଧା ଅଛି···ଯାଇପାରିବିନି ।"

ସ୍ୱାମୀ-ସ୍ତ୍ରୀ କଲେଜ ଗଲେ, ଆଉ ଛୁଟି ରଦ୍ଦକରି କର୍ମକ୍ଷେତ୍ରରେ କର୍ମାରମ୍ଭ କଲେ । ଦୁହେଁ ଥିଲେ ଓଡ଼ିଆ ବିଭାଗର ଅଧ୍ୟାପକ ଅଧ୍ୟାପିକା—ସାରସ୍ୱତ ମନ୍ଦିରରେ ଅଧିଷ୍ଠାତ୍ରୀ ଭାରତୀଙ୍କ ସେବକସେବିକା ।

କଳାଠାକୁରଙ୍କ ଲୀଳା ବିଚିତ୍ର । ସେତେବେଳେ କ୍ଷେତ୍ରବାସୀଙ୍କ ପାଖରେ ଶାଶୁ ଥାଆନ୍ତି । ତାଙ୍କ ବୟସ ସେତେବେଳକୁ ସତୁରି ପାର ହୋଇଯାଇଥାଏ । ଏ ସେଇ ୧୯୭୬ର ଘଟଣା । ଠାକୁରଙ୍କ ପ୍ରଥମ ପ୍ରସ୍ତାବିତ ଆଗମନର ବାଇଶିଦିନ ପରକଥା । ସେଦିନ ରାତିରେ କ୍ଷେତ୍ରବାସୀ, ଲାବଣ୍ୟଦେବୀ ଓ କ୍ଷେତ୍ରବାସୀଙ୍କ ଶାଶୁ ତିନିଜଣଯାକ ସ୍ୱପ୍ନ ଦେଖିଲେ, ଠାକୁର ଆସି ଯାଇଛନ୍ତି ଘରକୁ । ଶାଶୁ ଥିଲେ ଅନନ୍ୟ ଧର୍ମପରାୟଣା । ପ୍ରଭୁଙ୍କ ଦର୍ଶନ ବହୁଥର ହୋଇଛି ତାଙ୍କ ଜୀବନରେ । ଏ ଦୁହିଁଙ୍କ ଧର୍ମବିଶ୍ୱାସ ତ ନ କହିଲେ ଚଳେ । ତିନିଜଣ ଯାକ ଚିନ୍ତାକଲେ ଏମିତି ଏକା ସ୍ୱପ୍ନ କାହିଁକି ଦେଖିଲେ ! ସତରେ କ'ଣ ସେ ଆସିଯିବେ ! କ୍ଷେତ୍ରବାସୀ ସ୍ନାନାଦି ସାରି ଦଉଡ଼ିଗଲେ ଜଣଙ୍କ ଘରକୁ—ଯାହା ଘରକୁ ଶ୍ରୀ କାଶୀନାଥ ସିଂହାଣୀ ମଝିରେ ମଝିରେ ଆସନ୍ତି । ସେହି ଘରର ଘରଣୀ ଜଣେ ଧର୍ମପରାୟଣା ମହିଳା । କ୍ଷେତ୍ରବାସୀଙ୍କ ଧାରଣା, କାଲେ ସିଂହାଣୀଏ ସେଠାକୁ ଆସିଥିବେ । ତାଙ୍କ ଘରେ ପହଞ୍ଚି ସେ ହତଚକିତ ହୋଇଗଲେ । ସିଂହାଣୀଏ ପୂର୍ବରାତିରୁ ଆସିଛନ୍ତି । ସାଙ୍ଗରେ ନେଇ ଆସିଛନ୍ତି ନବକଳେବର ଦାରୁରେ ତିଆରି ମହାପ୍ରଭୁଙ୍କ ବିଗ୍ରହ । କ୍ଷେତ୍ରବାସୀ ଭାବବିହ୍ୱଳରେ ଘରକୁ ଫେରି ମନପ୍ରାଣ ଦେଇ ମହାପ୍ରଭୁଙ୍କୁ ନେଇ ବିଜେ କରାଇଲେ । ସେହିଦିନୁ ମହାପ୍ରଭୁ ସେ ପରିବାରର ହୋଇଗଲେ ।

ଲାବଣ୍ୟ ଦେବୀ ଏଥର ମୁଁ ଓ ମୋର ସହଯାତ୍ରୀ ବନ୍ଧୁଙ୍କୁ ଚା' ଯାଚିଲେ । ମୁଁ ମନା କଲି, ଚା ପିଏନି । ବନ୍ଧୁଙ୍କ ପାଇଁ ଆଣିବାକୁ କହିଲି । ମନ ବୁଝିଲାନି

ତାଙ୍କର । ସ୍ନେହଶୀଳ ଗୃହରେ ଭିତରକୁ ଯାଇ ଅଣସର ଘରେ ରହିଥିବା ଠାକୁରଙ୍କ ଭୋଗ ହାତରେ ଧରି ହାଜର । ଆହା, କି ସ୍ନେହ ! କି ଆନ୍ତରିକତା ! ପ୍ରଭୁର ପ୍ରସାଦ ଆଗରେ ଥୁଆ ହେଲାବେଳେ ମତେ ଲାଗୁଥାଏ, କ୍ଷେତ୍ରବାସୀ ଯିମିତ କହୁଛନ୍ତି, "ନିଅନ୍ତୁ, ଆଗ ପ୍ରସାଦ ପାଇଦିଅନ୍ତୁ ।"

ଲାବଣ୍ୟଦେବୀ ବସିଲେ ଆସି ଡ୍ରଇଂ ରୁମ୍‌ରେ । ସାଧାରଣ ବଖରାଟିଏ । କଣରେ ନୂଆ କଣା ହୋଇ ପ୍ଲାଷ୍ଟିକ ଘୋଡ଼ଣୀର ଓଢ଼ଣୀ ଭିତରେ ରହୁଥାଏ ସୁନ୍ଦର ଟେଲିଭିଜନ ସୁନ୍ଦର । ତା' ରୂପଛଟା ଦେଖିବାରେ ମନରେ ଆଗ୍ରହ ନ ଥାଏ ମୋର । ପ୍ରଭୁ ଉପାଖ୍ୟାନ କେତେ ସୁନ୍ଦର—କେତେ ପ୍ରାଣର, କେତେ ଆବେଗର ।

ମୋ' ପ୍ରଶ୍ନର ସହଜ ସରଳ ଉତ୍ତର ଦେଲେ, "ହିଁ, ତା'ପରେ ବହୁତ କଥା ଘଟିଛି ! ତେବେ......।"

ସେ ରହିଗଲେ । ମୁଁ କହିଲି ମନେ ପକାଇବାକୁ । ମୋ' ଅନୁରୋଧର ଯୋଡ଼ିଏ ଉଦ୍ଦେଶ୍ୟ ଥିଲା । ପ୍ରଥମ, ସେ କଥା ପ୍ରସଙ୍ଗରେ କ୍ଷେତ୍ରବାସୀଙ୍କୁ କଥା ନ କହନ୍ତୁ । ତାଙ୍କୁ ମନେପକାଇ ମୋ' ଆଗରେ ଭିଜିଁପଡ଼ି ଆଖିରୁ ଦୁ'ଧାର ଲୁହ ଲହୁ ଝରେଇ ନ ଦିଅନ୍ତୁ । ଦ୍ୱିତୀୟ ଉଦ୍ଦେଶ୍ୟ, ପ୍ରଭୁ କଥା ବଖାଣନ୍ତୁ । କାରଣ, ତାଙ୍କ କଥା ପଡ଼ିଲେ ସେ କୁଆଡ଼େ ବୈକୁଣ୍ଠ, ଯୋଗୀ ହୃଦୟ ଛାଡ଼ି ଯେଉଁଠି ତାଙ୍କ କଥା ପଡୁଥାଏ, ସେଇଠି ବିଜେ କରନ୍ତି । ସେଇଠି ଆସି ଆସନ ପାତିଦିଅନ୍ତି ।

ଘରେ ମହିମା ବିଜେ କରିବା ଦିନଠୁଁ ଗୃହଲକ୍ଷ୍ମୀ ତାଙ୍କର ମାଉ । ଅନ୍ନ ଭୋଗଠାରୁ ଆରମ୍ଭ କରି ସାତଦିନେ ସାତରଙ୍ଗର ଲୁଗା ବେଶ ହେବାର ବ୍ୟବସ୍ଥା ହେଲା । ଘରର ଏକନମ୍ବର ଥିବା କ୍ଷେତ୍ରବାସୀ, ଠାକୁରେ ବିଜେ କରିବା ଦିନଠୁଁ ଦୁଇ ନମ୍ବର ହୋଇଗଲେ ।

୧୯୭୪ ମସିହା କଥା । କ୍ଷେତ୍ରବାସୀଙ୍କର ସବୁବେଳେ ଇଚ୍ଛା, ମହିମା ବିଭିନ୍ନ ପ୍ରକାର ବିଭିନ୍ନ ରଙ୍ଗର ପଲିଷ୍ଟର ଲୁଗା ପଛେ ପିନ୍ଧନ୍ତୁ, ସବୁବେଳେ ଚକ୍ ଚକ୍ ହୁଅନ୍ତୁ । ଲାବଣ୍ୟଦେବୀ ବାଧା ଦିଅନ୍ତି, "ଦେଖ, ଆମକୁ ଗରମ ହେଉଛି, ତାଙ୍କୁ ହେବନି !"

କ୍ଷେତ୍ରବାସୀ ଶୁଣନ୍ତିନି । ସେଦିନ ଶୁକ୍ରବାର । ରସିକନାଗର ଧବଳଚଗର ପଲିଷ୍ଟର ପୋଷାକ ବଡ଼ସିଂହାର ବେଶରେ ପିନ୍ଧିଥାଆନ୍ତି । ତହିଁ ଆରଦିନ ଶନିବାର କଳାରଙ୍ଗ ପୋଷାକରେ ବସିବେ । ଲାବଣ୍ୟଦେବୀ କ'ଣ ଲେଖାଲେଖି କରୁଥାନ୍ତି ।

ହଠାତ୍ ପ୍ରାୟ ମଧ୍ୟରାତ୍ରିରେ ଆଖିପତା ପଡ଼ିଗଲା, ଠାକୁର ବ୍ୟସ୍ତ ହୋଇ କହୁଛନ୍ତି, "ଓଃ, କି ଗରମ" ଏହା କହି ସିଂହାସନରୁ ଓହ୍ଲାଇ ପଡ଼ି ପୂର୍ବଦିଗକୁ ମୁହଁକରି ବସିଲେ । ଲାବଣ୍ୟଦେବୀ ଚମକିପଡ଼ି ଦୌଡ଼ିଗଲେ, "ନା, ସେମିତି ସିଂହାସନରେ ଅଛନ୍ତି ।"

ଠିକ୍ ହେଲା, ଆଉ ପଲଙ୍କର ଚିନ୍ତା ହେବନି, ମାତ୍ର ଗୋଟିଏ କଥାର ସମାଧାନ ହୋଇପାରିଲାନି । ଭଡ଼ାଘର ଯୋଗୁଁ ଠାକୁରଙ୍କୁ ପୂର୍ବମୁଖୀ କରି ବସାଇ ହେଲାନି, ସେ ଉତ୍ତରମୁଖୀ ହୋଇ ବସିଲେ । ପୂର୍ବମୁଖୀ ହେବାର ଉପାୟ ନାହିଁ । ପୂର୍ବମୁଖୀ ବସିଲେ ଜଣେ ବସି ପୂଜା କରିପାରିବନି, ଲାବଣ୍ୟଦେବୀ ଓ କ୍ଷେତ୍ରବାସୀ କସିବାର ଦିଗ ବଦଳାଇ ପାରିଲେନି ।

ସେଇ ୭୩ ମସିହାରେ ବ୍ରହ୍ମପୁରରେ ଲୀଳା କଲେ ଲୀଳାମୟ । ଲାବଣ୍ୟଦେବୀ ସବୁଦିନେ ପହଡ଼ ମାତ୍ରରେ ପଲଙ୍କ ସଜାଡ଼ି ଶ୍ରୀଅଙ୍ଗରୁ ଫୁଲଟିଏ ଆଣି ପହଡ଼ କରିଦିଅନ୍ତି । ମଶାରି ଖୋଷି ଦିଅନ୍ତି । ପୁଣି ସକାଳ ହେଲେ ମଶାରି ଖୋଲି ପଲଙ୍କ ଉଠେଇ ଦିଅନ୍ତି । କେତେଦିନରୁ ସେଇ ଲୀଳା ଚାଲିଥିଲା କେଜାଣି ଲାବଣ୍ୟଦେବୀ ଲକ୍ଷ୍ୟ କରି ନ ଥିଲେ । ହଠାତ୍ ଦିନେ ସେ ସଚେତନ ହେଲେ, "ଏ କ'ଣ, ମୁଁ ଯେଉଁ ଫୁଲଟିଏ ଶ୍ରୀଅଙ୍ଗରୁ ଆଣି ରତ୍ନପଲଙ୍କ ଉପରେ ଥୋଉଛି, ସେ ଫୁଲ କୁଆଡ଼େ ଯାଉଛି, କିଏ ନେଇଯାଉଛି ।" ମନ ସମାଧାନ କରିଦେଲା, "କୁଆଡ଼େ ଚାଲିଯାଉଥିବ ଏତେଟିକେ ଫୁଲ, ମୂଷା ନେଇ ଯାଉଥିବ, ଉଡ଼ିଯାଉଥିବ ଇତ୍ୟାଦି—ଇତ୍ୟାଦି ।" ମାତ୍ର ଲାବଣ୍ୟଦେବୀ ସତର୍କ ରହିଲେ । ଦୁଇ ତିନ ରାତି ଫୁଲ ଆଣି ଭଲଭାବେ ପଲଙ୍କରେ ରଖି ମଶାରି ଖୁବ୍ ଭଲଭାବେ ଖୋସିଦେଲେ ପଲଙ୍କ ଚାରିପଟେ । ମାତ୍ର ଯେଉଁ କଥାକୁ ସେଇ କଥା, ଫୁଲ ପୁଣି ଉଭେଇ ଯାଉଛି । ଲାବଣ୍ୟଦେବୀ ପାଖଆଖ ଲୋକଙ୍କୁ ପଚାରିଲେ । ଏ ଦିଗରେ ଲୋକ କଣେ ତାଙ୍କୁ ବୁଝାଇ ଦେଲେ, "ରସିକନାଗର ଲକ୍ଷ୍ମୀ ତ ନାହାନ୍ତି ତାଙ୍କ ପାଖରେ । ପ୍ରଭୁ ଲକ୍ଷ୍ମୀଙ୍କ ପାଖକୁ ବଜେ କରି ଯାଉଛନ୍ତି ।"

ଲାବଣ୍ୟଦେବୀ ନଜେ ନଜେ ସମାଧାନ କରିବସିଲେ । ଗୁରୁବାର ଦିନ ଫରୁଆଟିଏ ରହି ମାଣ ବହେ ଲକ୍ଷ୍ମୀଙ୍କ ପାଖରେ ଓ ସେ ପୂଜା ହୁଅନ୍ତି । ମାଣ ତ ଲକ୍ଷ୍ମୀ । ଲାବଣ୍ୟଦେବୀ ନେଇ ଠାକୁରଙ୍କ ପାଦତଳ ବାମ ପାଖରେ ମାଣ ବସେଇଦେଲେ, "ଏଥର ହେଲା, ମା' ବସିଲେ ପାଦତଳେ । ଆଉ ଯିବନି ତ ପଳେଇ ରାତିରେ ?"

ଫୁଲ ଥୋଇଲେ ସେଦିନ ରାତିରେ ଶ୍ରୀଅଙ୍ଗରୁ ଆଣି ପଲଙ୍କ ଉପରେ । ଆଉ ନାଗରବର କୁଆଡ଼େ ନ ଚଳନ୍ତି । ଫୁଲ ଆଉ ଉଭେଇ ଗଲାନି ।

ବଡ଼ଦେଉଳ ମାଜଣାମଣ୍ଡପର ଗୀତଟିଏ ଲାବଣ୍ୟଦେବୀ କହୁଥିଲ ବେଳେ ମୋର ମନେପଡ଼ିଗଲା, "ଜଗବନ୍ଧୁ ଅଙ୍କେ ରତନ ପଲଙ୍କେ ପହୁଡ଼ିଲେ ସ୍ନିଗ୍ଧ କେମାଦେଇ......"

ବ୍ରହ୍ମପୁରରୁ ବଦଳି ହେଲ ଉଭୟଙ୍କର କଟକ ୧୯୭୮ ମସିହାରେ। ସେଉବର୍ଷ ମେ ମାସ ୨୬ ବା ୨୭ ତାରିଖର ଏ ଲୀଳା। କଟକ ଆସି ଘରଖୋଜା ଠିକ୍ କରିବାକୁ ସ୍ୱାମୀ-ସ୍ତ୍ରୀ ସ୍ଥିରକଲେ। ପୁଅ ରହିବ ଠାକୁରଙ୍କ ଦାୟିତ୍ୱରେ। ଯେଉଁଦିନ ଭୋର ସୃଷ୍ଟରୁ ସେମାନେ ମଟରରେ କଟକ ଯିବାକୁ ସ୍ଥିରକଲେ, ତା' ପୂର୍ବ ରାତିରେ ଠାକୁରଙ୍କ ପହୁଡ଼ ହେବାକୁ ଡେରିହେଲ। ରାତି ଦୁଇଟାରୁ ସ୍ୱାମୀ-ସ୍ତ୍ରୀ ଉଠି ନିତ୍ୟକର୍ମ ସାରିଲେ। କ୍ଷେତ୍ରବାସୀ ମହାପ୍ରଭୁଙ୍କ ମୂର୍ତ୍ତି ଆମା଼ରିବାକୁ ଯାଇ ଦୁଆର ଖୋଲିବାକୁ ଚେଷ୍ଟା କଲେ, ମାତ୍ର ଏ କ'ଣ କବାଟ ଭିତରୁ ବନ୍ଦଅଛୁ। ଯେତେ ଖୋଲିଲେ ଫିଟୁନାହିଁ। ଲାବଣ୍ୟଦେବୀ, ନିଜେ ଆସି ଚେଷ୍ଟା-କଲେ, ଯେତେ ଖୋଲିଲେ କବାଟ ଖୋଲୁନି। ମନେପଡ଼ିଲ ଭିତରର ଛୁଟିକିନିଟା କୋଧେ ପଡ଼ିଗଲା। କ୍ଷେତ୍ରବାସୀ ବ୍ୟସ୍ତ। ବସ୍‌ବେଳ ହୋଇଯିବ। ଟିକିଏ ଦର୍ଶନ-ନକରି ଯିବେ କେମିତି। ଲାବଣ୍ୟଦେବୀଙ୍କ ମୁଣ୍ଡରେ ବୁଦ୍ଧି ଜୁଟିଲା। ମନେପଡ଼ିଲ, ଡେରିରେ ଗଲ ରାତିରେ ପହୁଡ଼ ହୋଇଛୁ। ତେଣୁ କବାଟରେ ହାତଦେଇ ଧୀରେ କହିଲେ, "ଓ, ତାହେଲେ ଡେରିରେ ଶୋଇଛ ନା, ନିଦ ଭାଙ୍ଗୁନି। ଉଠ, କବାଟ ଖୋଲ, ଆମେ ପରା କଟକ ଯିବୁ ମଣିମା, ଉଠ !" ଏଥର କବାଟରେ ହାତ ଥୋଉ ଥୋଉ କବାଟ ଖୋଲିଗଲା। ଦୁହେଁ ମୁଣ୍ଡନୁଆଁଇଲେ ଲୀଳାମୟଙ୍କ ପାଦତଳେ।

୧୯୭୯ରେ କଟକରେ ଦୁଇ ଉନୋଟି ଲୀଳା ଦେଖାଇଥିଲେ ଚକାନୟନ। ଥରେ ଘରେ ବହୁତ କୁଣିଆ, ହୋଷ୍ଟେଲବାସ ଭିଡ଼। ଲାବଣ୍ୟଦେବୀ ଆଉ ଠାକୁରଙ୍କ ପାଇଁ ଭଲ ଭାବେ ଭୋଗ ତିଆରି କରିପାରୁ ନଥାନ୍ତି। ସିଂହାରୀ ଶିଖାଇଦେବାମତେ ଆଡ଼ୁ ପାଡ଼ୁ ମିଶାଇ ଖେଚେଡ଼ି ଟିକେ କରି ଭୋଗ ଲଗାଇ ଦେଉଥାନ୍ତି। ଗୃରିଦିନ ପରେ ମନକୁ ମନ ଭୋଗ ଲଗାଉ ଲଗାଉ କହିଲେ, "ସବୁଦିନେ ଏ ଖେଚେଡ଼ି ଆମକୁ ତ ଭଲ ଲାଗନ୍ତାନ୍ତି। ତୁମକୁ ବି ଭଲ ଲାଗୁ ନଥିବ ? ହେଲେ, ମୁଁ କ'ଣ କରିବ ? ମୋର ଉପାୟ ନାହିଁ। ଘରେ ଏତେ କୁଣିଆ, ଚଳେଇ ଦିଅ।"

ଠିକ୍ ସେଇଦିନ କାଶୀ ସିଂହାରୀ ଘରେ ଆସି ହାଜର। ଲାବଣ୍ୟଦେବୀ ପଚ୍ଚରିଲେ, "ହଠାତ୍ କ'ଣ ଆସିଲେ ? ବ୍ରହ୍ମପୁରରୁ ଫେରନ୍ତା ବାଟରେ ?"

—"ନା, ଆଜି ମତେ କହିଲେ ରତ୍ନସିଂହାସନ ଉପରୁ, ତୁ କାହିଁକି କଟକ ଆସୁନୁ ! ତୁ ଆସିଲେ ଭଲ ଖାଇବା ପିଇବା ମୋର ହୁଏ। ତୁ ଥରେ ଆ,

ବହୁତ ଧନ ହେଲ ଆସିଲୁ !" ତେଣୁ ଗୃହଆସିଲ । ପ୍ରକୃତରେ ପୁଷ୍ପରୁ ସିଂହାସ୍ପ ଆସିଲେ ଲବଣ୍ୟଦେବୀ ଛ' ତଅଣ ନଅ ଭଜା କରି ଠାକୁରଙ୍କୁ ଦଅନ୍ତି ଓ ସମସ୍ତେ ତାକୁ ଖାଆନ୍ତି । ଖେଚେଡ଼ି ଖାଇ ଖାଇ ବିରକ୍ତ ହୋଇ ସିଂହାସ୍ପଙ୍କୁ ପୁଷ୍ପରୁ ଡକାଇଆଣି ଲବଣ୍ୟଦେବୀଙ୍କ ହାତରେ ପୁଣି ସିଠିମିଠି ଖାଇଲେ ପୁରୁଷୋତ୍ତମ ମହାରାଜ ।

ଅଣୀ ମସିହାର କଥା । କ୍ଷେତ୍ରବାସୀ କଟକ ଅରବିନ୍ଦ ନଗରରେ ଘର କରିବାକୁ ଜାଗାଟିଏ କିଣିଥାଆନ୍ତି ସିନା, ମାତ୍ର ଜାଗା ତାଙ୍କ ମନକୁ ପାଉ ନଥାଏ । ନିହାତି ନକାଅନିଆ ଜାଗାଟା ଅରବିନ୍ଦ ନଗର । ତେଣୁ ଗୋଟିଏ ତିଆରି ଘର କିଣିବାକୁ ସେ ଖୋଜୁଥିଲେ । ମାତ୍ର ଘରର କର୍ତ୍ତା ତ ଯେଉଁଠି ଗୃହିବେ ଘର ସେଇଠି ହେବ । ଧନକର କଥା, ଭଡ଼ାଘରେ ପୂଜା କରୁଛନ୍ତି ସକାଳୁ ସକାଳୁ କ୍ଷେତ୍ରବାସୀ ଜଗନ୍ନାଥଙ୍କୁ । ପ୍ରଭୁଙ୍କ ସ୍ପଷ୍ଟ ନିର୍ଦ୍ଦେଶ କାନରେ ପଡ଼ିଲ, "ଏତେଆଡ଼େ ମୁଣ୍ଡ ନ ପୂରେଇ ସେଇ ଅରବିନ୍ଦ ନଗରରେ ଘର କର ।" କ୍ଷେତ୍ରବାସୀ ନିର୍ଦ୍ଦେଶ ମାନିଲେ । ଗଢ଼ିଉଠିଲ 'ସାରସ୍ୱତ ନିଳୟ' ପ୍ରଭୁଙ୍କ କୃପାରୁ । ଉପର ମହଲାରେ ପ୍ରଭୁ ବିଜେ କଲେ ମାଣବସା ଲକ୍ଷ୍ମୀ ମା'ଙ୍କୁ ଧରି ।

ଏମିତି ପ୍ରଭୁଙ୍କ ଲୀଳାଖେଳା ଗୃଲଲ ସାଢ଼ିପରିବାରରେ । ଲବଣ୍ୟଦେବୀ ହଠାତ୍ କହି ଉଠିଲେ, "ଗୋଟିଏ ଧନର ଅନୁଭବ ମୋର କେବେ ଭୁଲିବାର ନୁହେଁ । ସାନଝିଅ କୁନମାମା ପେଟରେ ଥାଏ । ଧନେ ସନ୍ଧ୍ୟାବେଳେ ଆଳତି କରିବା ବେଳେ ସ୍ପଷ୍ଟ ଦେଖିଲି, ଶ୍ରୀଜଗନ୍ନାଥଙ୍କ ବାମ ଆଖିରୁ ଝଟିକି ଲାଇଟ୍ ଭଳି ଗୋଟିଏ ଆଲୋକ ସୁଅ ଆସି ମୋ ଦେହରେ ମିଶିଗଲା । ମୁଁ ଶିହରି ଉଠିଲି । ଏକ ଅପୂର୍ବ ଅଭିଜ୍ଞତା ତାଙ୍କୁ ଚହଲାଇ ଦେଲା । ସେଇ ଅଭିଜ୍ଞତା ପାଇବାକୁ ମୁଁ ପୁଣି ଥରେ ଆଳତିକୁ ବୁଲାଇଲି ବିଭିନ୍ନ ଦିଗରେ ଓ ବିଭିନ୍ନ ଢଙ୍ଗରେ । କାଳେ ପୁଣି ଆଲୋକର ପ୍ରତିଫଳନ ହେତୁ ସେଇ ଦୃଶ୍ୟ ଆଉଥରେ ଦେଖିହେବ । ମାତ୍ର ଫେରିଲନି ସେ ଦୃଶ୍ୟ । ଆଜଯାଏ ମୁଁ ଚେଷ୍ଟାକରି ସେ ଅଭିଜ୍ଞତା ଲଭି କରିପାରିନି ।

ଏତେ କଥା କହିବା ବେଳେ ଲକ୍ଷ୍ୟ କଲି, ତାଙ୍କ ଆଖିରେ ଲୁହ ନାହିଁ । ସେ କେମିତି ନିର୍ବେଦ ଓ ନିର୍ଲିପ୍ତ ହୋଇଉଠିଛନ୍ତି । ଦୁଇଟି କାରଣରୁ ଏହା ହୋଇପାରେ ବୋଲି ଭାବିଲି । ଗୋଟିଏ ହେଲା, ଲୁହର ଉତ୍ସ; ହୁଏତ ଶୁଖି-ଯାଇଛି । ଅନ୍ୟଟି ହେଲା, ଦ୍ୱି' ଝିଅ 'ଲିପି' ଓ କୁନି ମାମା' ଓ ପୁଅ 'ବାବୁନି'କୁ ତାଙ୍କ ଜୀବନତରୀରେ ବସାଇ ପାରି ଲଗାଇବାକୁ ହେବ । ତେଣୁ ଆଉ ଭାଙ୍ଗି ପଡ଼ିଲେ ଚଳିବନି । ଦୁ'ଟା କାରଣଯାକ ବି ସତ ହୋଇପାରେ ।

ବଡ଼ଝିଅ 'ଲଚି' ପଢ଼ୁଥିଲା । ତାକୁ ପଚାରିଲି ତା' ଅଭିଜ୍ଞତାରୁ ପଦେ କହିବାକୁ । ବାପାଙ୍କ ଅଭିଜ୍ଞତା ଯଦି ସେ କିଛି ଜାଣିଥିବ । ଲଚି ଆଖିରୁ ଲୁହର ଧାର ଛୁଟିଲା । ଆମକୁ ଲୁଚେଇ ଲୁଚେଇ ସେ ଗୋଟିଏ ଧାର ପରେ ଆଉ ଗୋଟିଏ ଧାର ପୋଛିପକାଉଥାଏ । ବୋଉଙ୍କୁ କହିଲା, "କହିଚୁ ବାସନା କଥା !"

—"କ'ଣ ବାସେ ?" ମୁଁ ପଚାରିଲି ।

ଲାବଣ୍ୟଦେବୀ କହିଲେ, "ଶେଷ ଅବସ୍ଥାରେ ଆଉ ତ ପୂଜା କି ଦର୍ଶନ କରିବାକୁ ସେ ଉପରକୁ ଯାଇପାରିଲେନି, ହେଲେ ତାଙ୍କର ଶେଯପାଖରେ ଅମେ ସବୁ ବସିଲାବେଳେ ମହାପ୍ରସାଦ, ଧୂପ ଓ ବିଭିନ୍ନ ଫୁଲର ମହକ ଆମକୁ ଜଣାପଡ଼େ । ଏପରିକି ସେ ଦିନେ କହିଲେ, "ଓଃ, କି ସୁନ୍ଦର ତୁଳସୀ ବାସନା ! ଜାଣିପାରୁଛ ! ଠାକୁରଙ୍କ ଦେହର ତୁଳସୀ ମହକୁଛି ।"

ଲଚି କହିଲା ଯେ ସେ ଦେଖିଛି ଦେହ ଖରାପବେଳେ ଠାକୁରେ ହଳଦିଆ ଲୁଗା ପିନ୍ଧି ସବୁଘର ବୁଲୁଛନ୍ତି । ଥରେ ତାକୁ ସ୍ୱପ୍ନରେ କହିଲେ, "ଦେଖ, ତୋ ପାଇଁ ମୋ ରତ୍ନସିଂହାସନ ପାଖରେ ଜାଗା ରଖିଛି ।"

ସେ ଜାଗା ପ୍ରକୃତରେ ତା' ପାଇଁ ନଥିଲା । ଥିଲା କ୍ଷେତ୍ରବାସୀଙ୍କ ପାଇଁ । ସେଥିପାଇଁ ଲଚି କହିଲା, "ଏଇ ଅଳ୍ପଦିନ ତଳେ ସ୍ୱପ୍ନ ଦେଖିଲି, ବାପା ହଳଦିଆ ଲୁଗା ପିନ୍ଧି କେମିତି ଗୋଟାଏ ବାବାଜି ବେଶରେ ଜଗନ୍ନାଥଙ୍କ ପାଖରେ ଅଛନ୍ତି ଆଉ କହୁଛନ୍ତି, "ଏମିତି କାହିଁକି ବ୍ୟସ୍ତ ହେଉଛ । ସେତେବେଳେ ମୁଁ ତୁମ୍ଭମାନଙ୍କ ପାଖରେ ଥାଇ ଠାକୁରଙ୍କୁ ଜଣାଉଥିଲି ତୁମ ସମସ୍ତଙ୍କ ପାଇଁ, ବର୍ତ୍ତମାନ ତ ମୁଁ ଠାକୁରଙ୍କର ଖୁବ୍ ପାଖରେ ଅଛି !"

କହିଚାଲିଲା ଲଚି, "ସବୁବେଳେ ମତେ ବାପା ଏବେ 'ବାବାଜି' 'ବାବାଜି' ଲାଗୁଛନ୍ତି ।"

ମତେ କିନ୍ତୁ ଏ ପରିବେଶରେ ଲାଗୁଥାଏ କ୍ଷେତ୍ରବାସୀ ସତେ ଯେମିତି ଘର ଭିତରେ ଅଛନ୍ତି । ଏଇ ଚାଲି ଆସିବେ, ପୂର୍ବଭଳି ପ୍ରଭୁଙ୍କ ଲୀଳା କହିବାକୁ ଅନୁନୟ କରିବେ । ବେଶୀ ଶୁଣିବେ ଆଉ କମ୍ କହିବେ ।

ଲକ୍ଷ୍ୟ କଲି 'ଲଚି' ପୁଣି ଲୁହ ପୋଛୁଛି ଆଖିରୁ । ଲାବଣ୍ୟଦେବୀ ସ୍ଥିର, ନିଶ୍ଚଳ ଦୃଷ୍ଟି ଡାଳିଥା'ନ୍ତି ତାକୁ ଚାହିଁ ।

ପାର୍ଶ୍ୱାପଗାମୀ ରେଲଗାଡ଼ିର ଶବ୍ଦ 'ସାରସ୍ୱତ ନିଳୟ'ର ଶାନ୍ତ ପରିବେଶକୁ ହଠାତ୍ ଅଶାନ୍ତ କରିଦେଲା ।

ପୁଅ ବାବୁନ ପହଞ୍ଚିଗଲା । କ୍ଷେତ୍ରବାସୀଙ୍କ ପନ୍ଦର ଷୋଳବର୍ଷର ଆତ୍ମଜ । ମୁହଁରେ କ୍ଷେତ୍ରବାସୀଙ୍କ ହସ ଫୁଟିଉଠୁଥାଏ । ଏଣୁତେଣୁ ଦି'ପଦ କଥାବାର୍ତ୍ତା ହେଲା ।

ସେଦିନ ଉପରକୁ ଗଲିନ ଦର୍ଶନ କରିବାକୁ ଅଣଯରରେ ଥିବା ଅଣାକାର ପୁରୁଷଙ୍କୁ । ଲିପି, କୁନିମାମା, ବାବୁନ, ଲବଣ୍ୟଦେବୀ ବିଦାୟ ଦେଲେ । ବାହାରେ ଲତାଳୁରୁ ଫାଟକ ପାଖରେ ରହିଥିବା ସ୍କୁଟରଯାଏ ସେଦିନ କିନ୍ତୁ କ୍ଷେତ୍ରବାସୀ ବଢ଼େଇଦେବାକୁ ଆସି ନ ଥିଲେ ।

ଲବଣ୍ୟଦେବୀଙ୍କ ଅନ୍ତରଛୁଆଁ ଅନୁରୋଧ ମୋ କାନରେ ସ୍ପଷ୍ଟ ହୋଇ ଗୁଞ୍ଜରି ଉଠୁଥାଏ, "ଆସିବେ, ଭଲ ଲାଗେ ଆପଣ ଆସିଲେ । ଠାକୁରଙ୍କ କଥା ଟିକେ ପଡ଼େ ତ !"

ମୋ ମନଆକାଶରେ ଗୋଟିଏ ଦୃଶ୍ୟ ଫେରନ୍ତା ବାଟରେ ସଜୀବ ହୋଇ ଉଠୁଥାଏ—ଆଜକୁ ୪୭ ବର୍ଷ ତଳେ ଭଦ୍ରକର ହାଇସ୍କୁଲ ପଛପଟ ନୁଆଁଣିଆ ଗୃଳଘରେ ଜନ୍ମ ନେଇଥିବା ଭାଗ୍ୟବାନ ଶିଶୁଟି ଆଜି ସେପୁରରେ ମହାପ୍ରଭୁଙ୍କ ଅତି ନିକଟରେ ସ୍ଥାନ ପାଇଛି ।

ଲବଣ୍ୟଦେବୀ ବୋଧହୁଏ ଠାକୁରଙ୍କୁ ଭୋଗ ଲଗାଇବାକୁ ପ୍ରସ୍ତୁତ ହେଉଥିବେ । କୁନି ମାମା ଆଉ ବାବୁନ ବୋଧେ ବହି ଧରି ବସିଥିବେ ପଢ଼ା ଟେବୁଲ ପାଖରେ । ଲିପି ବୋଧେ ଆକାଶରେ ପ୍ରତ୍ୟେକ ତାରାକୁ ଖିନ୍‌ଭିନ୍ କରି ବାପାଙ୍କୁ ତା'ର ଖୋଜୁଥିବ ଅଉ ଥରକୁଥର ଆଖିରୁ ଲୁହ ପୋଛୁ ଦେଉଥିବ ।





ବହୁ ଅଚିହ୍ନା ଅଜଣା ପାଠକପାଠିକା ଏହାକୁ ପଢ଼ି ଲେଖକ ପାଖକୁ ଧାଇଁଆସିଛନ୍ତି ଅନୁସନ୍ଧିତ୍ସୁ ହୋଇ– ଏ ଚରିତ୍ର ଜଣ ସତ ? ଉତ୍ତରରେ ଲେଖକ ହସିଦେଇଛନ୍ତି । ସେମାନଙ୍କ ଭିତରୁ କେତେଜଣ, ଲେଖକର ଆତ୍ମୀୟ ହୋଇଯାଇଛନ୍ତି କେବଳ ଏଇ ପୁଣ୍ୟ ଚରିତ ଯୋଗୁଁ ।

**ଥ**ରକୁ ଦୁ'ଥର ଏ ଘଟଣା ଘଟିବା ପରେ ମତେ ଟିକେ କେମିତି କେମିତି ଲାଗିଲା । ତୁଚ୍ଛା ସନ୍ଦେହ ମୋ ମନରେ ଦେଖାଦେଲା । ମନକୁ ମୁଁ ପୁଣି ବୁଝେଇବାକୁ ଚେଷ୍ଟା କଲି । 'ଏ ସାମାନ୍ୟ କଥାକୁ ଏତେ ଗମ୍ଭୀର ଭାବେ ଭାବିବା ଦରକାର ନାହିଁ । ଜୀବନରେ କେତେ କେତେ ଘଟଣା ଘଟୁଛି । ଜୀବନ ଚାତ୍ରିରରେ ଘଟଣାମୟ । ଏ ଗୋଟାଏ କିବା ଘଟଣା ଯେ ସ୍ୱା'କୁ ମୁଁ ଏତେ ଓଜନ ଦେଉଛି ? ମନ ମୋର ବୁଝିଗଲା । ମୁଁ ନିଶ୍ଚିନ୍ତ ହେଲି ମନରୁ ସେ ଚିନ୍ତାକୁ ଫୋପାଡ଼ି ଦେଇଛି ବୋଲି । ମାତ୍ର ସେ ଚିନ୍ତା ମତେ ଗ୍ରୁଡ଼ିଲାନି ସେଦିନ ରାତିରେ ବି । ମତେ ଲାଗିଲା ସତେ ଯେମିତି ସେ ଚିନ୍ତା ଗୋଟାଏ ଡାହାଣୀ ହୋଇ ମତେ ଲାଗିଛି । ମୋଟେ ଗ୍ରୁଡ଼ୁନି । ସେଦିନ ରାତି ପହୁଡ଼ ପରେ ମନ୍ଦିର ଶୋଧ ହେଉ ହେଉ ମୁଁ ଯେତେବେଳେ ବଡ଼ଛତା ମଠର ବାବାଜି ଆଉ ଅନ୍ୟାନ୍ୟ କୀର୍ତ୍ତନିଆଁଙ୍କ ସାଙ୍ଗରେ ସିଂହଦ୍ୱାର ଜାଲି କବାଟ ଦେଇ ନଇଁ ନଇଁ ବାହାରିଲି ; ଦେଖିଲି, ସେ ସେମିତି ମୁଣ୍ଡ ବାଳ ମୁକୁଳା କରି ସେଇଠି ଠିଆହୋଇଛନ୍ତି ।

ଅରୁଣଚନ୍ଦ୍ରଙ୍କଠାରୁ ହାତେ ଦି'ହାତେ ଦୂରରେ ଠିଆହୋଇ ସେ ମତେ ସେଇକଥା ପୁଣି ପଚାରିଲେ, "ମଣିମା ଭଲରେ ଶୋଇଲେ ତ ? ବଡ଼ସିଂହାର ନୀତି ଠିକ୍ ଠିକ୍ ହେଲା ତ ? ଦେବଦାସୀ ଗୀତଗୋବିନ୍ଦର ମନଚହଲା ଗୀତକୁ ଝୀଣାଝୀଣା କଣ୍ଠରେ ଢୋଳାଇଲେ ତ ? ବୀଣାକାର ସେବକ ଥିଲେ ତ ? ଶୟନଠାକୁର ଉମ୍ବରୁ ଉପରେ ବିଜେ କଲେ ତ ? ଲକ୍ଷ୍ମୀ ପୁଷ୍ପାଞ୍ଜଳି ଦେଲେ ତ ? ପୁଷ୍ପାଳକେ ଆଳଟ କରି ସାରିଲାପରେ ଦୀପ ଆଲୁଅ ଲିଭି କଳାହାଟ ଦ୍ୱାର ବନ୍ଦ ହେଲାବେଳେ ପୋଖରିଆ ଭିତରେ ମେକାପ ଓ କଳାହାଟ ଦ୍ୱାର ବାହାରେ ପଢ଼ିଆରୀ 'ମଣିମା' ଡାକ ଦେଇଥିଲେ ତ ? ଠାକୁରେ ପଖାଳ ଆଉ କଦଳୀ ଭଜା ଭଲରେ ଖାଇଲେ ତ ?"

ଓଃ, କି ଅସରନ୍ତି ପ୍ରଶ୍ନ । ସେଦିନ କିନ୍ତୁ ମୋର ଧୈର୍ଯ୍ୟର ସୀମା ରହିଲାନି । ବିରକ୍ତ ହୋଇ କହିଲି, "ସବୁଦିନେ ଏମିତି ଟିକିନିଖି କାହିଁକି ପଚାରୁଛନ୍ତି ବଡ଼ସିଂହାର ଆଉ ପହୁଡ଼ ନୀତି କଥା ? କ'ଣ ମିଳୁଛି ଏଥିରୁ ? ଯଦି ଏତେ ଜାଣିବାକୁ ଇଚ୍ଛା, ତେବେ ନିଜେ ଯାଉନାହାଁନ୍ତି ମନ୍ଦିର ଭିତରକୁ । ପହୁଡ଼ ଆଗରୁ ଘଣ୍ଟାଏ ରହିଲେ ତ ନିଜେ ସବୁ ଜାଣିପାରିବେ । ଆଉ ଏମିତି ପଚାରି···"

ହଠାତ୍ ମୁଁ ଚୁପ୍ ହୋଇଗଲି । ଦେଖିଲି, ସେ ନିଜ ଲୁଗାକାନିରେ ତାଙ୍କ ଆଖି ଲୁହ ପୋଛୁଛନ୍ତି । ମତେ ଟିକେ ଖରାପ ଲାଗିଲା । ସେ କିନ୍ତୁ ଲୁହ ପୋଛୁ ପୋଛୁ କହିଲେ, "ବାବୁ, ସବୁଦିନେ ବିରତପାହାନ୍ତି ତୁମକୁ ବଡ଼ସିଂହାର ଆଉ ପହୁଡ଼ କଥା ପଚାରିବାରୁ ବିରକ୍ତ ହୋଇଯାଉଛ ନା ? ହଉ, କାଲିଠୁଁ ଆଉ କେବେ ପଚାରିବିନି । କାଲିଠାରୁ ଏଠି ବି ଆଉ ତୁମେ ଦେଖିବାକୁ ପାଇବନି ମତେ ।"

ହଠାତ୍ ମୁଁ ନିଜକୁ ଦୋଷୀ ମନେକଲି । ଚାହିଁ ଦେଖିଲି, ସେ ତରତର ହୋଇ ଚାଲିଯାଉଛନ୍ତି । ପଛରୁ ଚାହିଁଲି ସେ ତାଙ୍କ ଡାହାଣ ହାତକୁ କହୁଣୀଠାରୁ ଭାଙ୍ଗି ବୋଧେ ଆଖି ଉପରେ ରଖିଛନ୍ତି ଓ ଲୁହ ପୋଛୁଛନ୍ତି । କାରଣ, ତାଙ୍କ କହିଁ କହିଁ କାନ୍ଦଣା ସ୍ୱରଟା ବଡ଼ଦାଣ୍ଡରେ ଜମାଟ ବାନ୍ଧିଥିବା ଅନ୍ଧାରକୁ ଚିରି ପକାଉଥିଲା । ତାଙ୍କର ଅଭିମାନର କୋହ ଏତେ ଜୋର୍‌ରେ ଉଠୁଥିଲା ଯେ ମୁଁ ସେ ବୁକୁଫଟା କୋହର ଉଚ୍ଛ୍ୱାସ ବେଶ୍ ଭଲଭାବେ ଶୁଣିପାରୁଥିଲି । ସାଇଁ ସାଇଁ ନିଶାଗର୍ଜନ । କାର୍ତ୍ତିକନିଆଁ କିଏ କୁଆଡ଼େ ଗଲେଣି । ମୋ ମନରେ ଲକ୍ଷେ ପ୍ରଶ୍ନ । କିଏ ଏ ନାରୀ ? ବଡ଼ସିଂହାର ବେଳେ ମନ୍ଦିର ଭିତରକୁ ନ ଯାଇ ନୀତିକଥା କାହିଁକି ଏମିତି ଟିକିନିଖି ଜାଣିବାକୁ ଚାହୁଁଛନ୍ତି ମୋ'ଠାରୁ ? ମୋ ବିବେକ ସେତେବେଳକୁ ମୋ ଉପରେ ଚାବୁକ ଉଠେଇଥାଏ, "ଯାହାହେଲେ ବି ଏପରି ବିରକ୍ତ ହେବା କ'ଣ ଭଲ ହେଲା ? ଅପରିଚିତା ହେଲେ ବି ଶିଷ୍ଟାଚାର ଲଂଘନ ନ କରି ଦିଅଁଙ୍କ ନୀତି ବିଷୟରେ ତ ପଚାରୁଥିଲେ । ତେବେ ଶିଷ୍ଟ ଭାବରେ ପଦେ ଦି'ପଦ ଉତ୍ତର ଦେବାରେ କ'ଣ ବା ବାଧା ଥିଲା ? ବିରକ୍ତ ହେବା କ'ଣ ଭଲ ହେଲା ?"

ମୁଁ କ୍ଳାନ୍ତିଗ୍ରସ୍ତ ପାଦରେ ଚାଲୁଥିଲି । କିଏ ଏ ନାରୀ ! ମୋ ବିବେକ ତାଡ଼ନାକୁ ତୀବ୍ରତର କରି ତାଙ୍କର ଶେଷ କେଇପଦ କଥା ମୋ କାନରେ ଗୁଞ୍ଜରି ଉଠୁଥାଏ । "ସବୁଦିନେ ରାତିପାହାନ୍ତା ତୁମକୁ ବଡ଼ସିଂହାର ଆଉ ପହୁଡ଼ କଥା ପଚାରିବାରୁ ବିରକ୍ତ ହୋଇଯାଉଛ ନା ? କାଲିଠୁଁ ଆଉ ପଚାରିବିନି ବାବୁ ! କାଲିଠୁଁ ଆଉ କେବେ ପଚାରିବିନି । କାଲିଠାରୁ ଏଠି ବି ଆଉ ତୁମେ ଦେଖିବାକୁ ପାଇବନି ମତେ ।"

କିଏ ଏ ନାରୀ ! ହଠାତ୍ ସଚେତନ ହୋଇ ଦେଖିଲି ସେ ଅନ୍ଧାରରେ କୁଆଡ଼େ ଲିଭିଗଲେଣି । ମୋ ପାଦ ଘର ଦୁଆରେ ପହଞ୍ଚିଲା ବେଳକୁ ଆକାଶରେ କୁଆଁ ତାରା ମତେ ବି ଆକଟ କରି କହିଲା, "ଭଲ କଲନି ବାବୁ ତାଙ୍କ ମନରେ ଦୁଃଖ ଦେଇ ।"

ତହିଁଆରଦିନ ଦିନତମାମ ମୁଁ ସେଇ ରାତିର ଘଟଣାକୁ ମନେ ମନେ ଦୋହରାଉଥାଏ । ସେ କ'ଣ ସତରେ ଆଜି ରାତିରେ ଅରୁଣସ୍ତମ୍ଭ ପାଖ ଆସିବେନି ପହୁଡ଼ ବେଳକୁ । ମତେ ଆଉ ବଡ଼ସିଂହାର ବିଷୟରେ ପଚାରିବେନି ?

ଠିକ୍ ତାହା ହିଁ ହେଲା । ପହୁଡ଼ ଫେରନ୍ତା ମୋର ଖୋଜିଲା ଆଖି ତାଙ୍କୁ ଦେଖିବା ପାଇଁ ଚେଷ୍ଟା କରି ହତାଶ ହେଲା । ଠିକ୍ କେତେ ସମୟ ଅନ୍ୟମନସ୍କ ହୋଇ ମୁଁ ଅରୁଣସ୍ତମ୍ଭ ତଳେ ଠିଆ ହୋଇଯାଇଛି, ମୋର ମନେ ନାହିଁ । ଅନ୍ୟମାନେ କିଏ କୁଆଡ଼େ ସେତେବେଳକୁ ବିଦାୟ ନେଲେଣି । ମୋର ଅନ୍ୟମନସ୍କ ମନକୁ ହଠାତ୍ ପ୍ରକୃତିସ୍ଥ କରିଦେଲା ଗୋଟାଏ ଶ୍ରେଷ୍ଠ ନୀଳ ଆଲୋକଶିଖା । ଚାହିଁ ଦେଖିଲି ଆଲୋକଶିଖାଟି ଠିକ୍ ସେଇ ସ୍ଥାନରେ ଜଳୁଛି, ଯେଉଁଠି ସେ ସବୁଦିନେ ଠିଆ ହୋଇଥା'ନ୍ତି । ଆଲୋକଶିଖାଟି କିନ୍ତୁ ସ୍ଥିର ନ ଥିଲା । ସାମାନ୍ୟ ପବନରେ ଯେମିତି ସେ ହଲୁଥିଲା । ପ୍ରଥମେ ଭାବିଲି ମୋ' ଦୁର୍ବଳ ମନର ବୋଧେ ଏ ଗୋଟାଏ ପ୍ରତିଛବି । ଆଖି ବନ୍ଦ କରି ଭଲ ଭାବେ ମୋ ଦୁଇ ଆଖିପତାକୁ ପୋଛି ପୁଣି ଚାହିଁଲି । ଏ କ'ଣ ? ଅସ୍ଥିର ଆଲୋକବିନ୍ଦୁଟି ଠିକ୍ ଭୂଇଁରୁ ଚାରିହାତ ଉଚ୍ଚ ସେମିତି ରହିଛି । ଟିକିଏ ଭୟ କଲି । ପୁଣି ମନକୁ ଦମ୍ଭ ଦେଇ ମୁଁ ଚାଲିବାକୁ ଆରମ୍ଭ କଲି ମୋ ରହଣି ଜାଗାକୁ । ମାତ୍ର ଏ କ'ଣ ! ଆଲୋକଶିଖାଟି ମୋ' ସହ ଚାଲିବାକୁ ଆରମ୍ଭ କଲା । ମୁଁ ଭୟ କଲି ଏ ପ୍ରକାର ଅସ୍ୱାଭାବିକ ପରିସ୍ଥିତିରେ । ଚାରିଆଡ଼କୁ ଚାହିଁଲି । କିଏ ଜଣେ ଅବା ଦେଖାହେଲେ ମୁଁ ଟିକେ ସାହସ ପାଇବି । ମାତ୍ର ଚାହିଁ ଦେଖିଲି ମୋର ଦୁର୍ଭାଗ୍ୟକୁ ଜଣେ ବି କେହି ନ ଥିଲେ ସାରା ବଡ଼ଦାଣ୍ଡରେ । ରାଜାଙ୍କ ନଅର, ମସ୍ତିଚକୋଠ ଛକ ପାରି ହୋଇ ଗୁଣ୍ଡିଚା ମନ୍ଦିରମୁହାଁ ମୁଁ ଯେତେ ଜୋର୍‌ରେ ଚାଲିଲି, ସେ ଆଲୋକଶିଖା ସେତେ ଜୋର୍‌ରେ ଚାଲିଲା ମୋ ସହିତ ।

ନରେନ୍ଦ୍ର କୋଣ ଛକ ଛାଡ଼ି ଯେତେବେଳେ ଗୁଣ୍ଡିଚା ମନ୍ଦିରମୁହାଁ ହେଲି, ଆଲୋକଶିଖା ମୋ' ଚାରିପଟେ ଥରେ ବୁଲିଯାଇ ନରେନ୍ଦ୍ର ଆଡ଼କୁ ଚାଲିଲା । ମୁଁ ଯେତେବେଳେ ପୁଣି ଗୋଡ଼ ବଢ଼େଇଲି ଦକ୍ଷିଣମୁହାଁ ହୋଇ, ସେ ପୁଣି ଥରେ ମତେ ବେଢ଼ା କରି ବୁଲିଯାଇ ନରେନ୍ଦ୍ର ଆଡ଼କୁ ମୁହାଁଇଲା । ମୁଁ ସିଆଡ଼କୁ ନ ଯାଇ ଦୁ' ପାହୁଣ୍ଡ ପକାଇଲାବେଳକୁ ପୁଣି ଫେରିଆସି ସେ ମୋ' ଚାରିପଟେ ବୁଲିଯାଇ ସେଇ ନରେନ୍ଦ୍ର ଆଡ଼କୁ ହଲି ହଲି ଚାଲିଲା । ମତେ ଲାଗିଲା ସେ ଯେମିତି ମତେ ନିର୍ଦ୍ଦେଶ ଦେଉଛି, ନରେନ୍ଦ୍ର ଆଡ଼କୁ ଯିବାପାଇଁ । ଏ କଥାରେ ଦୃଢ଼ ନିଶ୍ଚିତ ହେବାକୁ ମୁଁ ଯେତେବେଳେ ଫେରିପଡ଼ି ନରେନ୍ଦ୍ର ଆଡ଼କୁ ପାଦ ବଢ଼େଇଲି, ଆଲୋକଶିଖାଟି ମୋ' ସହ ପୁଣି ପୂର୍ବପରି ଟଳି ଟଳି ଚାଲିବାକୁ ଆରମ୍ଭ କଲା । ଆଉ ମୋ' ଚାରିପଟେ ବୁଲୁନି । ମତେ ଲାଗିଲା ସତେ ଯେମିତି ଏଥର ମୁଁ ତା' ସହ ଯିବାକୁ ରାଜି ହେବାରୁ ସେ ବେଢ଼ାକରି ମୋତେ ତା' ଇଚ୍ଛାନୁଯାୟୀ ଯିବା ପାଇଁ ନିର୍ଦ୍ଦେଶ ଦେଉନି ।

ଆଲୋକଶିଖା ସହ ମୁଁ ନରେନ୍ଦ୍ର ଆଡ଼କୁ ଚାଲିବାକୁ ଆରମ୍ଭ କଲି । ରାତିର ଶେଷ ଯାମରେ ନିଘୋଡ଼ ନିଦରେ ଶୋଇଥିଲା ନରେନ୍ଦ୍ର ପୋଖରୀ । ଦୂର ଆକାଶର କୁଆଁ ତାରାର ପ୍ରତିଛବି ନରେନ୍ଦ୍ରର ପାଣି ଉପରେ ସ୍ପଷ୍ଟ ଫୁଟି ଉଠି ରାତିର ଆସନ୍ନ ଯବନିକା ପତନର ସୂଚନା ଦେଇଥାଏ । ଆଲୋକ ଶିଖାର ନୀଳିମା ସାମାନ୍ୟ ଟିକିଏ ନିଷ୍ପ୍ରଭ ଜଣାପଡ଼ୁଥାଏ ଆସନ୍ନ ସକାଳର ଜ୍ୟୋତି ଏହାର କାରଣ ହୋଇପାରେ । ହଠାତ୍ ଆଲୋକ ଗୋଟିଏ ଘରର ଦୁଆର ମୁହଁରେ ସ୍ଥିର ହୋଇଗଲା । ଦେଖିଲି, ସୁନ୍ଦର କମକୁଟି ହୋଇଥିବା ଯାଉଁଳି କବାଟ ଭିତରୁ ବନ୍ଦ ଅଛି । ଆଲୋକଶିଖାଟି ଯାଉଁଳି କବାଟର ଠିକ୍ ମଝିରେ ମିଶିଗଲା ।

ମୁଁ ଚାରିଆଡ଼କୁ ଚାହିଁଲି । କିଏ କୁଆଡ଼େ ନାହାନ୍ତି । ମୁଁ ନରେନ୍ଦ୍ର କୋଣ ଛକକୁ ଖାଲି ମୁଣ୍ଡରେ ଫେରିଲି ତରତରରେ ପାଦ ପକେଇ ।

ସେତିକିବେଳୁ ସେହି ରହସ୍ୟାବୃତ ଘଟଣାଟି ମୋ' ମନରେ ଅଠା ଭଳି ଲାଗିରହିଥିଲା । ଭାବିଲି, ବୋଧହୁଏ ମୋ' ଅବଚେତନ ମନ-ଦର୍ପଣରେ ଏହା ଏକ ପ୍ରତିଫଳନ । ମାତ୍ର ମୋ ଭାବନା ସେଦିନ ରାତିରେ ମିଥ୍ୟା ବୋଲି ପୁଣି ପ୍ରମାଣିତ ହେଲା । ବଡ଼ସିଂହାର ନୀତି ପରେ ଦେଉଳରୁ ଫେରିଲି ପରେ ପୁଣି ସେଇ ନିର୍ଦ୍ଦିଷ୍ଟ ଜାଗାରୁ ଆଲୋକଶିଖାଟି ମୋର ସାଥୀ ହେଲା । ନରେନ୍ଦ୍ର କୋଣରେ ମୁଁ ଗୁଣ୍ଡିଚା ମନ୍ଦିର ଆଡ଼କୁ ଦୁଇଥର ମୁହାଁଇବାରୁ ସେ ମୋ' ଚାରିପଟେ ଦୁଇଥରଯାକ ବୁଲି ନରେନ୍ଦ୍ର ଆଡ଼କୁ ଯିବାକୁ ନିର୍ଦ୍ଦେଶ ଦେଲା । ବାଧ୍ୟ ହୋଇ ଆଲୋକଶିଖାର ବୋଲ ମାନି ମୁଁ ଯେତେବେଳେ ନରେନ୍ଦ୍ର ଆଡ଼କୁ ଗଲି, ଶିଖାଟି ପୂର୍ବ ଦିନର ଘର ଦୁଆରମୁହଁର ଯାଉଁଳି କବାଟର ମଝି ଧାରରେ ମିଶିଗଲା । ମୁଁ ସେଇ ଦୁଆରମୁହଁକୁ

ସୁହିଁ ଠିଆ ହେଲାବେଳେ ହଠାତ୍ ଦେଖିଲି ଦୁଆର ଖୋଲିଗଲା ଏବଂ ଭିତରୁ ବାଁ ହାତରେ ଶାଢ଼ୀଟିଏ ଧରି ସେଇ ସ୍ତ୍ରୀଲୋକଟି ଘରୁ ବାହାରି ନରେନ୍ଦ୍ର ଆଡ଼କୁ ଚାଲିଲେ । ସେଦିନ କିନ୍ତୁ ବାଢ ଆଉ ବେଶି ନ ଥାଏ । ଟେଶ୍ମୁ ଝାପ୍‌ସା ଆଲୁଅରେ ସେ ମତେ ନିଶ୍ଚେ ଦେଖିପାରିଥିବେ । ମତେ ଦେଖି ତାଙ୍କ ମୁହଁରେ ଧାରେ ହସ ଫୁଟିଉଠିଲା ଏବଂ ଉପସ୍ଥିତ ପରିସ୍ଥିତିରେ ଟିକିଏ ବି ଅପ୍ରତିଭ ନ ହୋଇ ସେ ମତେ ସୁମଧୁର ସ୍ୱରରେ ପ୍ରଶ୍ନ ପଚାରିଲେ, "ବଡ଼ସିଂହାରରୁ ଏବେ ଫେରିଲ ? ସହୃଦ୍ ଆଜି ଏତେ ଡେରିରେ ହେଲା ?" ମୁଁ 'ହଁ' କହିଲାବେଳକୁ ଦେଖିଲି ସେ ଲୁଗାପଟା ଧରି ନରେନ୍ଦ୍ର ଆଡ଼କୁ ଚାଲିଗଲେଣି ।

ହଠାତ୍ ପଡ଼ଶାଘରୁ ଜଣେ ଉଠିବା ଦେଖି ମନର କୌତୂହଳକୁ ଦୂର କରିବାକୁ ମୁଁ ସେଇ ଘରକୁ ହାତ ଦେଖେଇ କହିଲି, " ଏ ଘରେ କିଏ ରହନ୍ତି ଜାଣିଛ କି ?" ଉତ୍ତର ମିଳିଲା, "ନା ଜାଣିନୁ । ଏ ଘରବାଲା ସବୁବର୍ଷ ଏଇ ସ୍ନାନପୂର୍ଣ୍ଣିମୀ ପାଖାପାଖି ଆସି ହଅନ୍ତି ଗୁଣ୍ଡିଚା ମନ୍ଦିର ଫେରନ୍ତା ନୀଳାଦ୍ରି ବିଜେ ଯାଏ ରହି ପୁଣି ଚାଲିଯାଆନ୍ତି । ···ମିଶିଲି ଆଡ଼େ ଘର । ନାଁ, ଗାଁ, ଆମେ କିଛି କେହି ଜାଣିନୁ ?"

ସନ୍ଦେହ-ଜାଲରୁ ମୁକ୍ତ ହେବା ପରିବର୍ତ୍ତେ ମୁଁ ଜାଲରେ ଅଧିକ ଛନ୍ଦି ହୋଇଗଲି । ମିଶିଲି ଆଡ଼େ ଘର, ମନ୍ଦିର ଭିତରକୁ ନ ଯାଇ ବଡ଼ସିଂହାର ନୀତି ଦେଖିବାକୁ ଏତେ ଆଗ୍ରହ ! କ'ଣ ଏ ସବୁର ରହସ୍ୟ !

ତହିଁ ଆରଦିନ ଏ ରହସ୍ୟ-ଜାଲ ଭେଦ କରିବାକୁ ମୁଁ ମନେ ମନେ ଦୃଢ଼ ପ୍ରତିଜ୍ଞା କଲି । ସେଦିନ ବଡ଼ସିଂହାର ପରେ ଯେତେବେଳେ ମୁଁ ଅରୁଣସ୍ତମ୍ଭ ଚକଡ଼ାରେ ପହଞ୍ଚିଲି, ଦେଖିଲି, ଆଲେକ ଶିଖା ଆଉ ନାହିଁ । କିନ୍ତୁ ଠିକ୍ ସେଇ ଜାଗାରେ ଗୋଟାଏ ଅପୂର୍ବ ସୁବାସର ମୂର୍ଚ୍ଛନା ମୁଁ ବାରିପାରିଲି । ମତେ ଲାଗିଲା ଯେମିତି କିଏ ଜଣେ ଅଦୃଶ୍ୟ ହାତରେ ସୁନ୍ଦର ସୁବାସିତ ଫୁଲ ତୋଡ଼ାଟିଏ ମୋର ଅତି ପାଖରେ ଧରିଛି । କି ଅପୂର୍ବ ସୁବାସ ! ମାତ୍ର ସେଇ ସୁବାସର ମୂର୍ଚ୍ଛନା ସ୍ଥିର ନ ହୋଇ ଆଲେକ ଶିଖା ଭଳି ମୋ ସହିତ ଗତି ଆରମ୍ଭ କଲା । ମୁଁ ଧୀରେ ଧୀରେ ଆଗେଇଲି ମୋର ରହିବା ଜାଗା ଆଡ଼କୁ । ଲକ୍ଷ୍ୟ କଲି, ମୋର ଗତି ସହିତ ତାଳ ଦେଇ ସୁବାସର ଉତ୍ସ ଗତି କଲା ଏବଂ ଠିକ୍ ନରେନ୍ଦ୍ର ମୋଡ଼ ପାଖରେ ମୁଁ ଯେତେବେଳେ ମୋ ରହିବା ଜାଗା ଗୁଣ୍ଡିଚା ମନ୍ଦିରଆଡ଼କୁ ମୁହାଁଇଲି, ସୁବାସର ଧାର୍ ସେମିତ ମୋ ଚାରିପଟେ ବୁଲି ନରେନ୍ଦ୍ର ଆଡ଼କୁ ପ୍ରସରିଗଲା । ଆଲେକଶିଖା ଭଳି ଏ ସୁବାସ ଧାର୍ ମତେ ନରେନ୍ଦ୍ର ଆଡ଼କୁ ଯିବାକୁ ଯେମିତି ନିର୍ଦ୍ଦେଶ ଦେଉଛି । ଯନ୍ତ୍ରବତ୍ ମୁଁ ନରେନ୍ଦ୍ର ଆଡ଼କୁ ଯିବାକୁ ଗୋଡ଼ ବଢେଇବାରୁ ସୁବାସର ମହକଧାର ମୋ ସହ ଯିବାକୁ ଆରମ୍ଭ କଲା । ଆଶ୍ଚର୍ଯ୍ୟ କଥା ଆଲେକଶିଖା ଭଳି ସୁବାସର

ମୂର୍ଚ୍ଛନା ସେହି ନିର୍ଦ୍ଦିଷ୍ଟ ଘରର କବାଟ ପାଖରେ ଲୀନ ହୋଇଗଲା । ସେଇଠାରୁ ବାସନା ବାରି ନ ହେବାରୁ ମୁଁ ଜାଣିଲି ଯେ, ଧୀପଶିଖା ଭଳି ଏ ସୁବାସର ଧାରା ଅରୁଣଦ୍ରୁମ ଚକଡ଼ାଠାରୁ ଏଇ ଘରଯାଏ ବହି ଆସୁଛି । ରାତି ବେଶୀ ଥିଲା । ମୁଁ ସେଇଠୁ ନରେନ୍ଦ୍ର କୋଣ ମୋଡ଼କୁ ଆସି ପୁଣି ଗୁଣ୍ଡିଚା ମନ୍ଦିରଆଡ଼େ ପାଦ ବଢ଼େଇଲି ।

ନିଜର କର୍ମମୟ ଜୀବନରେ ମୁଁ ଅତ୍ୟସ୍ତ ହୋଇ ରହୁଥିଲେ ହେଁ ଦିନଯାକ ଏଇ ରହସ୍ୟ ବୃତ୍ତାନ୍ତ ମୋ ମନରେ ଅଠାଭଳି ଲାଗିଥାଏ । ବଡ଼ସିଂହାର ବେଶ, ବଡ଼ସିଂହାର ଗୀତ, ଶୟନ ଧଅଁଙ୍କ ଡମ୍ଫରୁ ବଜେ, ଲକ୍ଷ୍ମୀ ପୁଷ୍ପାଞ୍ଜଳି, ଠାକୁରଙ୍କ ଭୋଗ, ପଖାଳ କଦଳୀଭଜାରେ ମୋର ଏତେ ଲୋଭ ଯେ ଦିନଯାକ ମନ୍ଦିରକୁ ନ ଯାଇ ମୁଁ ରହିଯାଇପାରେ, ମାତ୍ର ରାତିର ବଡ଼ସିଂହାର ଗୀତ ଚୁମ୍ବକ ପାଖରେ ମୁଁ ଲୁହା ହୋଇଯାଏ । ରାତି ଡିନଘଣ୍ଟା ବେଳକୁ ମୁଁ ପାଗଳ ପରି ମନ୍ଦିରରେ ପହଞ୍ଚେ । ଏ ରହସ୍ୟରୁ ରକ୍ଷା ପାଇବା ପାଇଁ ବଡ଼ସିଂହାର ଗୀତକୁ ନ ଯିବା ଏକମାତ୍ର ଉପାୟ ହେଲେ ହେଁ ମୋର ନିଜ ଦୁର୍ବଳତା ମତେ ସେଥିରୁ ରକ୍ଷା କରିପାରୁ ନ ଥାଏ । ମୁଁ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଉଥାଏ, ଏ ଅସାଧାରଣ ପରିସ୍ଥିତି କବଳରେ ।

ସେଦିନ ରାତିରେ ପହୁଡ଼ ଗୀତ ପରେ ଅରୁଣ ଦ୍ରୁମ ଚକଡ଼ାରେ ପହଞ୍ଚିଲା ବେଳକୁ ଦୂର ଆକାଶର ସପ୍ତର୍ଷି ମଣ୍ଡଳକୁ ଚାହିଁ ଜାଣିଲି ଯେ ରାତି ବହୁତ ବାକି ଅଛି । କୁଆଁ ତାରା ଆକାଶକୁ ଏଯାଏ ଆସିନି । ଚକଡ଼ା କଣକୁ ଚାହିଁ ଦେଖିଲି ମୋର ପରିଚିତ ଆଲୋକଶିଖା ମତେ ଯେମିତି ଅପେକ୍ଷା କରିଛି । ତା' ସହିତ ସେଦିନ ସୁବାସର ମହକ ବି ମୁଁ ସ୍ପଷ୍ଟ ବାରିପାରିଲି । ତା'ପରେ ମୋ' ଚାଲିବା ସହ ଦୁହେଁ ସେହିପରି ଚାଲିବାକୁ ଆରମ୍ଭ କଲେ । ରାଜନଅର, ମରିଚକୋଟ ଛକ ପାର ହୋଇ ନରେନ୍ଦ୍ର କୋଣରେ ପହଞ୍ଚିବା ମାତ୍ରେ ସେ ଦୁହେଁ ପୂର୍ବ ପ୍ରଣାଳୀରେ ମତେ ନିର୍ଦ୍ଦେଶ ଦେଲେ ସେଇ ଘରକୁ ଯିବା ପାଇଁ ଏବଂ ଯିବାପରେ ସେ ଘରର ଦୁଆର ମୁହଁରେ ଦୁହେଁଯାକ ଲୀନ ହୋଇଗଲେ । ମୁଁ ସ୍ଥିର ଭାବରେ ଦୁଆର ମୁହଁ ଆଗରେ ଠିଆ ହୋଇ ରହିଲି । ସ୍ପଷ୍ଟ ଶୁଣିପାରିଲି ପ୍ରଥମେ ଘଣ୍ଟି ଧ୍ୱନି ହେଲା ଏବଂ ପରେ ଘରୁ ଶଙ୍ଖ ଧ୍ୱନି ଭାସିଆସିଲା । ପରେ ପରେ ଦୁଆରବନ୍ଧ ଫାଙ୍କ ଦେଇ ଅପୂର୍ବ ବାସନାର ଗୋଟାଏ ମୂର୍ଚ୍ଛନା ମୁଁ ସ୍ପଷ୍ଟ ବାରିପାରିଲି । ମନେପକାଇ ଜାଣିଲି ମୋ' ସହିତ ଅରୁଣଦ୍ରୁମ ଚକଡ଼ାରୁ ଯେଉଁ ସୁବାସ ଏଇ ଘରଯାଏ ଆସେ, ଇଏ ଠିକ୍ ସେଇ ସୁବାସ । ହଠାତ୍ କବାଟ ଖୋଲିଲା ଏବଂ ସେ ପରିଚିତା ସ୍ତ୍ରୀଲୋକ ବାହାରି ଆସିଲେ । ସେଇ ଚିରାଚରିତ ପ୍ରଶ୍ନ, "ଏବେ ଆସିଲ ଧଅଁଙ୍କ ପାଖରୁ ? ପହୁଡ଼ ଏବେ ହେଲା ?" ମୁଁ 'ହଁ' ଭରିଲି ।

ମନରେ ଯଥେଷ୍ଟ ସାହସ ଧରି ପଚାରିଲି, "ମୋର କେତେକ କଥାବାର୍ତ୍ତା ଅଛି । ଯଦି କିଛି ନ ଭାବବେ···",

ମତେ କହିବାକୁ ନ ଦେଇ ସେ କହିଲେ, "ଏବେ ତ ମୋଟେ ବେଳ ନାହିଁ । ଠାକୁରେ ଶୋଇ ନାହାନ୍ତି । ଭୋଗ ବି ସରିନ । ଯଦି କାଲି ଆସନ୍ତ···"

—"କେତେବେଳେ ?"

—"ମନ୍ଦିରରେ ଦି' ପହର ଧୂପ ସରିବା ପରେ ଆସିଲେ ପହୁଡ଼ ସମୟରେ କଥାବାର୍ତ୍ତା ହେବାକୁ ସୁବିଧା ହେବ ।"

ତହିଁଆରଦିନ ଦି'ପହର ଧୂପ ସରି ପହୁଡ଼ ହେଲାବେଳକୁ ଦିନ ଦୁଇଟା ହୋଇଥାଇ । ମୁଁ କବାଟରେ ଠକ୍ ଠକ୍ କରିବା ମାତ୍ରେ କବାଟ ଖୋଲିଗଲା । ସେ ମତେ ଯେମିତି ଚାହିଁ ବସିଥିଲେ ଅତି ଆତୁରତାର ସହିତ । ଦେଖୁ ଦେଖୁ ମତେ ଘର ଭିତରକୁ ନେଇଗଲେ । ଅଗଣା ପାର ହୋଇ ଖୁବ୍ ଚଉଡ଼ା ପିଣ୍ଡାଟାରେ ସେ ଗୋଟିଏ ମସିଣା ଓ କମ୍ବଳ ପକାଇ ଦେଲେ । ମତେ ବସିବା ପୂର୍ବରୁ ତଳେ ଥିବା କୁଣ୍ଡରୁ ଗୋଡ଼ ଧୋଇବାକୁ ନିର୍ଦ୍ଦେଶ ଦେଇ ଗୋଟିଏ ଗାମୁଛା ବଢ଼େଇ ଦେଲେ ଗୋଡ଼ ପୋଛିବାକୁ ।

ହଠାତ୍ ବାଣ୍ଡ ଦୁଆରେ କବାଟ ଠକ୍ ଠକ୍ ହେଲା । ସେ କହିଲେ । "ଟିକେ ବସ, ମୁଁ ଦେଖେ ବାହାରେ କିଏ ?" ଦୁଆର ଖୋଲିବା ପରେ ଦେଖିଲି ଜଣେ ବୁଢ଼ା ଘରେ ପ୍ରବେଶ କଲେ । ବୟସ ସତୁରି ପାଖାପାଖି । ଓଡ଼ିଆରେ ଦୁହେଁ କଥାବାର୍ତ୍ତା ହେଲେ । ଆଗନ୍ତୁକଙ୍କର ଡେରି ହେବାର କାରଣ ଜାଣିବାକୁ ଚାହିଁବାରୁ ସେ ଉତ୍ତର ଦେଲେ ଯେ ଘରେ କ୍ଷୀରି ଗୁଡ଼ଲା ନ ଥିଲା । ଯୋଗାଡ଼ କରୁ କରୁ ଡେରି ହୋଇଗଲା । ସେ ଗୁଡ଼ଲା ବି ବେଶୀ ଭଲ୍ ମିଳିଲାନି । ଯାହା ମିଳିଲା ସେ ଆଣିଛନ୍ତି । ମୋ' ଆଡ଼କୁ ଆଗନ୍ତୁକ ପ୍ରଶ୍ନସୂଚକ ଆଖିରେ ଚାହିଁବା ଦେଖି ସ୍ତ୍ରୀଲୋକ ଜଣକ କହିଲେ, "ଏ ବର୍ତ୍ତମାନ ଆସିଛନ୍ତି । ମନ୍ଦିରରୁ ଚହ୍ଲା । ନାଁ ଜାଣିନି । କଥାବାର୍ତ୍ତା ଆରମ୍ଭ କଲାବେଳକୁ ତୁମେ ପହଞ୍ଚିଲ ।" ମତେ ଚାହିଁ ପୁଣି କହିଲେ, ଇଏ ମୋର ସ୍ୱାମୀ । ଆମ ଘର ଝିଟିପିଲ୍ ପାଖରେ ।"

ଅଳ୍ପ ସମୟ ପରେ ଆଗନ୍ତୁକ ବିଦାୟ ନେଲେ । ଏଥର ମୋ'ଠାରୁ ସାମାନ୍ୟ ଦୂରରେ ବସି ସେ ଆରମ୍ଭ କଲେ, "ହଁ, କ'ଣ କଥାବାର୍ତ୍ତା ହେବା ପାଇଁ କହୁଥିଲ ପରା । ତେବେ ମୋ' ବିଷୟରେ ଜାଣିବା ପାଇଁ ତୁମେ ବୋଧେ ଚାହୁଁଛ ? ଏଇଆ ତ ?"

ମୁଁ ମୁଣ୍ଡ ହଲାଇ 'ହଁ' କହିଲି । ସେ ମୁଣ୍ଡର ଓଢ଼ଣୀଟାକୁ ଟିକେ ସଜାଡ଼ି ଦେଉ ଦେଉ କହିଲେ, "ଜଗନ୍ନାଥଙ୍କ ସହ ମୋ'ର ଯେଉଁ ସମ୍ପର୍କ ଅଛି, ମୁଁ ସେ କଥା ତୁମକୁ କହିବି । କିନ୍ତୁ ପ୍ରଥମେ ତୁମେ ତୁମ ପରିଚୟ ମତେ ଦିଅ । ତୁମେ ଗତବର୍ଷ ଏଇଦିନ ତ ଏଠି ନ ଥିଲ ?"

ମୁଁ କହିଲି, "ନା, ଗୃହପାଞ୍ଚମାସ ହେଲା ବଦଳି ହୋଇ ପୁରୀ ଆସିଛି ।" ତା'ପରେ ମୋ' ନାଁ ଆଉ ଘର କଥା କହିଲି ।

ସେ କହିଲେ, "ବେଶ୍ ଠିକ୍ ଅଛି । ବ୍ରାହ୍ମଣ ଲୋକ, ସବୁ ଜାତି ମାନନ୍ତି ବଡ଼ ଜାତି ବୋଲି । ସେଇଥିପାଇଁ ଠାକୁରଙ୍କଠାରେ ତୁମର ଏତେ ମନ । ହେଲେ, ତାଙ୍କୁ ଆଠକାଳ ବାରମାସୀ ଦେଖିବା ମୋ' ଭାଗ୍ୟରେ ନାହିଁ । ତନିଶହ ପଁଷଠି ଦିନରୁ ମୁଁ ମୋଟେ ସାତଦିନ ତାଙ୍କ ଦର୍ଶନ ପାଏ ।"

—"କୋଉ କୋଉ ଦିନ ?"

—"ସ୍ନାନ ପୂର୍ଣ୍ଣିମୀରେ ସେ ଯେତେବେଳେ ବିଜେ କରନ୍ତି ସ୍ନାନବେଦୀରେ ବଡ଼ଦାଣ୍ଡରୁ ଓ ଲଙ୍ଗୁଳି ମଠ କୋଠା ଉପରୁ ମୁଁ ତାଙ୍କ ଦର୍ଶନ ପାଏ । ଗୁଣ୍ଡିଚା ବେଳେ ଦି'ଦିନ ବା ଅତି ବେଶୀରେ ତିନିଦିନ, ବାହୁଡ଼ାବେଳେ ସେମିତି ତିନି-ଚାରିଦିନ..."

—"କିନ୍ତୁ ସେ ତ ସବୁବେଳେ ମନ୍ଦିରରେ ଥାଆନ୍ତି ।"

ତାଙ୍କ ଓଠରେ ଦୁଃଖବୋଳା ହସର ଧାର ସ୍ପଷ୍ଟ ଦେଖି ପାରିଲି, "କିନ୍ତୁ ସବୁରି ଭାଗ୍ୟରେ କ'ଣ ତାଙ୍କ ଦର୍ଶନ ସମ୍ଭବ ?"

—"କାହିଁକି ନୁହେଁ ?"

—"ଆମେ ବିଜାତି ଯବନ, ପଠାଣ, ମୋ' ନାଁ ଶବନମ୍ ।"

—କିନ୍ତୁ..."

—"କହୁଛି ଶୁଣ । ମୋ' ଜୀବନ କାହାଣି ବଡ଼ ଅଦ୍ଭୁତ । ପିଲାଦିନୁ ପ୍ରଭୁଙ୍କୁ ନ ଦେଖିବି ତାଙ୍କ ପ୍ରତି ଟାଣ ପଡ଼ିଥିଲା । ଆମ ଗାଁରୁ ଯେତେବେଳେ ବହୁତ ଲୋକ ପୁରୀ ଆସନ୍ତି । ବାଡ଼ିରେ ନଡ଼ିଆଠାରୁ ଆରମ୍ଭ କରି ଫଳ ପରିବା କେତେ କ'ଣ ଧରି ସେମାନେ ଯେତେବେଳେ ପୁରୀ ଆସନ୍ତି, ମୁଁ ବାପା, ମା, ଅଜା, ଆଈଙ୍କଠାରୁ ପାଇଥିବା ପଇସାକୁ ଏକାଠି କରି ସଞ୍ଚି ସଞ୍ଚି ଯାହା ରଖିଥାଏ, ସବୁତକ ଭୋଗ କରିବାକୁ ପଠାଇ ଦିଏ । ମୋ' ପଇସାରେ ସେମାନେ ଫଳ, ନଡ଼ିଆ ଭୋଗ କରି ପଠେଇ ଦିଅନ୍ତି । ସେ ଭୋଗ ପାଇଲେ ମତେ ଠିକ୍ କୋହିନୂର ପାଇଲା ଭଳି ଲାଗେ । ସବୁଦିନେ ଗାଧୋଇ ସାରି ମୁଁ ସେ ଭୋଗ ପାଏ ।"

ହଠାତ୍ ପ୍ରକୃତସ୍ଥ ହୋଇ ଭିତରକୁ ଗୃହେଁ କହିଲେ, "ଓଃ, କେତେ ବଡ଼ପାଟି କରୁଛୁ । ଶୋଇଛନ୍ତି । ଶୋଇବାରେ ବାଧା ହେବ ।"

—"କିଏ ?"

—"ମହାପ୍ରଭୁ ।"

ଏଥର ସାମାନ୍ୟ ଧୀର ସ୍ୱରରେ ସେକଥା ଆରମ୍ଭ କଲେ, "ଏମିତ ଦିନ ପରେ ଦିନ ଗଡ଼ିଗଲା ! ବାହାଘର ହେଲା । ଆମ ଗାଁରୁ ଶାଶୁଘର ଗାଁ ଘଣ୍ଟାକର ବାଟ ନୁହେଁ । ବାହାହେଲା ବେଳକୁ ବୟସ ଦଶ ହୋଇଥିଲା । ଶାଶୁଘରେ ଗୋଟିଏ ଗଛ ମୋ' ଜୀବନର ଗତି ବଦଳେଇ ଦେଲା ।"

—"ଗଛ !"

—"ହଁ, ଶାଶୂଘର ପଡ଼ିଶାରେ ଗୋଟିଏ ବ୍ରାହ୍ମଣ ଘର ଥିଲା । ତାଙ୍କ ବାଡ଼ି ଆମ ବାଡ଼ି ଲଗାଲଗି । ଦୁ' ବାଡ଼ି ଦୋସମାଳରେ ଗୋଟିଏ ନିମଗଛ ଥିଲା । ସେ ଗଛର ଗଢ଼ଣଟା ଏମିତ ଯେ, ମୁଁ ତାଙ୍କୁ ପ୍ରଥମେ ଦେଖି ଦେଖି ଭୋଳେଇ ଗଲି । ଏତେ ସୁନ୍ଦର ନିମଗଛ ମୁଁ ଆଜିଯାଏ କୋଉଠି ଦେଖିନି । ଭୂଇଁରୁ କେତେ ସୁନ୍ଦର ଗୋଲ ହୋଇ ଉଠିଥିଲେ । ହଁ, ପ୍ରତ୍ୟେକ ଜୀବନରେ ଗୋଟାଏ ବଡ଼ଣି ଅନୁଭୂତି ସବୁରି ଅଛି ।"

ମୁଁ ପଚାରିଲି, "କ'ଣ ?"

ସେ କହିଲେ, "ଏଇ ଦେଖନ୍ତୁ, ସଂସାରରେ କେତେ କେତେ ଲୋକଙ୍କୁ ଆମେ ଜାଣୁଥାଉଁ, କେତେ କେତେ ଲୋକଙ୍କ ସାଙ୍ଗେ ଚିହ୍ନା-ପରିଚୟ ହେଉଥାଉଁ, ମାତ୍ର ତୁମେ ଜାଣିଥିବ, ଚିହ୍ନା ନାହିଁ ପରିଚୟ ନାହିଁ, ହଠାତ୍ ଜଣଜଣକୁ ଦେଖିଲେ ନିଜର ନିଜର ଲାଗେ, ଆପଣାର କରିବାକୁ ଇଚ୍ଛାହୁଏ, ମନ ତା' ପ୍ରତି ଟଳିଯାଏ । ନୁହେଁ ?"

ମୁଁ ହସିହସି କହିଲି, "ସ୍ୱାମୀଙ୍କ କଥା କହୁଛନ୍ତି ତ ?" ସେ କହିଲେ, "ନା, ନା, ସ୍ୱାମୀଙ୍କ ପ୍ରତି ମୋର ମନ ଟଳିବା କଥା କହୁନି ।"

—"ଆଉ କ'ଣ ସେ ନିମଗଛ ?"

—"ହଁ, ଦେଖିଲାବେଳୁ ମୋ' ମନ ତାଙ୍କ ପ୍ରତି ଟଳିଗଲା, ତାଙ୍କଠିଁ ଲାଖି ରହିଲା । ପ୍ରତିଦିନ ସକାଳ ସନ୍ଧ୍ୟା ଛଡ଼ା ଦିନକୁ କୋଡ଼ିଏ ପଚାଶଥର ତାଙ୍କୁ ନ ଦେଖିଲେ ମୁଁ ବାୟାଣୀ ହୋଇ ଯାଉଥିଲି । ସେ ଗଛ ମତେ ଜୀଅନ୍ତା ମଣିଷ ଭଳି ଲାଗୁଥିଲେ; ମୁଁ ତାଙ୍କ ପାଦକୁ ଗୋବରରେ ଲିପି ଦେଉଥିଲି, ମୂଳରେ ପାଣି ଦେଉଥିଲି । ପତରଟିଏ ତାଙ୍କ ଦେହରେ ଶୁଖିଗଲେ ମୁଁ ତାକୁ ଝାଡ଼ି ଦେଉଥିଲି । ସେ ମୋର ପ୍ରାଣର ପ୍ରାଣ ଥିଲେ ।"

ସେ ଟିକେ ରହିଯାଇ ପୁଣି ଆରମ୍ଭ କଲେ, "ଦିନକର କଥା, ମୁଁ ରାତି ପାହାନ୍ତାରୁ ସ୍ୱପ୍ନ ଦେଖିଲି ମୋ' ଗଛକୁ କିଏ ହାଣି ଗଡ଼ଗଡ଼ କରି ପକାଉଛି, ସେ କାନ୍ଦୁଛନ୍ତି । ଶେଯରୁ ଏକା ନିଃଶ୍ୱାସରେ ଦଉଡ଼ିଗଲି ତାଙ୍କ ପାଖ । ମାତ୍ର ଯାହା ଦେଖିଲି ଖୁବ୍ ଡରିଗଲି ।

—"କ'ଣ ଦେଖିଲେ ?"

—"ଗଛମୂଳକୁ ଗୁଡ଼େଇ ଗୋଟାଏ ବିରାଟ ସାପ ଫଣାଟେକି ଜିଭ ଦୁଇଟି ଲହଲହ କରୁଛି । ସୁ' ସୁ' ଗର୍ଜନ ବି ମୁଁ ଶୁଣିପାରିଲି । ମୁଁ କେଜାଣି କାହିଁକି ମୁଣ୍ଡିଆ ମାରିଦେଲି ଗଛତଳେ । ତା'ପରେ ସେ ସାପ ଧୀରେ ଧୀରେ ଚାଲିଗଲା । ମୁଁ ପୁଣି ଘରକୁ ଫେରିଆସିଲି । ସେଦିନ ରାତିରେ ମୁଁ ପୁଣି ସ୍ୱପ୍ନ ଦେଖିଲି । ଗଛ ମତେ କହୁଛନ୍ତି, "ତୁ ମତେ ଚିହ୍ନିପାରୁନୁ ନା ଶବନମ୍ ? ଠିକ୍ ବେଳେ ମତେ ଚିହ୍ନିବୁ । ସାପ ଦେଖି ଡରିବୁନି । ସାପ ମୋ' ଦେହରେ ଅଛି । ଏତିକି ଜାଣିଥା, ତୋ' ଛଡ଼ା ମୋ' ଦେହରେ କେହି ହାତଦେଇ ପାରିବେନି ।"

—"ଏମିତି ଗଛ ସାଙ୍ଗେ ମୋର ସ୍ୱପ୍ନରେ ଏବଂ ପରେ ପ୍ରକୃତରେ କଥାବାର୍ତ୍ତା ଆରମ୍ଭ ହୋଇଗଲା ।"

ମୁଁ ଉତ୍କଣ୍ଠାଭରା ସ୍ୱରରେ ପଚାରିଲି, "ପ୍ରକୃତରେ କଥାବାର୍ତ୍ତା ହେଉଥିଲେ ?

—"ହଁ, ମତେ ଏକୁଟିଆ ଦେଖି ଗଛକଥା କହନ୍ତି । ଦିନେ ଦିନେ ଖାଇବାକୁ ମାଗନ୍ତି ନଡ଼ିଆ, କଦଳୀ । ଦିନେ ଦିନେ ପଇଡ଼ପାଣି ପିଇବାକୁ ମାଗନ୍ତି । ଏପରିକି, ମୁଁ ଘର ଭିତରେ ଥିଲାବେଳେ ବେଳେ ବେଳେ ତାଙ୍କ ଡାକ ପରିଷ୍କାର ଶୁଣେ । ଅତି ଆଦରରେ ସେ ମତେ 'ଶବନ୍' 'ଶବନ୍' ଡାକନ୍ତି । ମୁଁ କାମ ଛାଡ଼ି ତାଙ୍କ ପାଖ ଦଉଡ଼ିଯାଏ । କେତେବେଳେ ପାଣି ପିଇବାକୁ ମାଗନ୍ତି ତ ଆଉ କେତେବେଳେ ଖାଇବାକୁ ମାଗନ୍ତି । ଆଉ କେତେବେଳେ··· ।"

ସେ ହସି ପକାଇଲେ । ମୁଁ ହସର କାରଣ ପଚାରିବାରୁ ସେ କହିଲେ, "ଅରେ ଅରେ ସେ ଖୁବ ମଜା କରନ୍ତି । ତାଙ୍କ ଦେହର ଗୋଟାଏ ନିର୍ଦ୍ଦିଷ୍ଟ ଜାଗାକୁ ଦେଖେଇ ମତେ ସେଠି ହାତ ଆଙ୍ଗୁଳା ଦେଖେଇବାକୁ କହନ୍ତି । ମୁଁ ଆଙ୍ଗୁଳା ଦେଖାଇବା ମାତ୍ରେ ଧଳାଧଳା ରସ ଫୋଟାଏ ମୋ' ହାତରେ ଝରେଇ ଦେଇ ମତେ ପିଇଦେବାକୁ କହନ୍ତି । ମୁଁ ଆନନ୍ଦରେ ପିଇଦିଏ ।"

—"କିଚକିଲା ପିତା ଲାଗୁଥିବ ତ ?"

—"ଅମୃତ ତ କ'ଣ ଚାଖିନି । କିନ୍ତୁ ସେ ରସ ବୋଧେ ଅମୃତ । ତା'ପରେ ଲୋଭରେ କେତେଥର ସାହସ କରି ତାଙ୍କୁ ରସ ମାଗେ । ସବୁଥର ସେ ମତେ ରସ ଦିଅନ୍ତି ଆଉ ବଡ଼ ମଜାରେ କହନ୍ତି, "ତୁ ମତେ କ୍ଷୀର ଦଉଛୁ, ମୁଁ ତତେ କ୍ଷୀର ଦଉଛି । ତୋର ମୁଁ ସବୁ ଶୁଝିଦେଇଛି । ନା ଶବନମ ?"

—"ଏ କଥା କେହି ଶୁଣିପାରନ୍ତିନ ?"

—"ନା, ଏମିତି କ ବଡ଼ ପାଟିରେ ମତେ 'ଶବନ୍' 'ଶବନ୍' ଡାକିଲେ ବି ପରେ ମୋ' ଛଡ଼ା କେହି ତାଙ୍କ ଡାକ ଶୁଣିପାରନ୍ତିନ ।" ଲକ୍ଷ୍ୟ କଲି, ସେ ଟିକେ ଭାବବିହ୍ୱଳ ହୋଇଗଲେ ।

—"ଦିନେ ରାତିରେ ମତେ ସ୍ୱପ୍ନରେ କହିଲେ, 'କାଲି ତୁ ମୋ' ପାଖୁ ଆସିବୁନି ଶବନ୍, କାଲି ତୁମୂଳକାଣ୍ଡ ହେବ । ଧୈର୍ଯ୍ୟ ଧରିବୁ । ମନେ ରଖିବୁ, ମୁଁ ସବୁଦିନେ ତୋର ହୋଇ ରହିଛି ଆଉ ରହିବି ।"

—"କ'ଣ ତୁମୂଳକାଣ୍ଡ ହେଲା ?"

—"ଆଗରୁ କହିଛି ସେ ଗଛ ଦୋସମାଳିରେ ଥିଲେ । ଆମ ପଡ଼ିଶା ବ୍ରାହ୍ମଣ ଘର ସେ ଗଛ ଉପରେ ଦାବି କାହିର କରିବାକୁ ବାଡ଼ ପକେଇ ଦେଲେ ଜବରଦସ୍ତି । ସେଇଦିନୁ ମୁଁ ଗଛପାଖୁ ଯାଇପାରିଲିନି । ତାଙ୍କ ମୂଳରେ ପାଣିଦେଇ ପାରିଲିନି । ନଡ଼ିଆ କଦଳୀ ମୋ' ହାତରୁ ସେ ଆଉ ନେଲେନି । ମତେ ରସ ଦେଲେନି । ମୁଁ ପାଗଲୀମି ହୋଇଗଲି ।"

ସେ କାନ୍ଦି ପକେଇଲେ । ତା'ପରେ ନିଜକୁ ସମ୍ଭାଳି ନେଇ କହିଲେ, "ଗଛଟି କିନ୍ତୁ ବ୍ରାହ୍ମଣ ଘରକୁ ନ ଯାଇଥିଲେ ମୋର ଭାଗ୍ୟ ବଦଳି ଯାଇ ନ ଥାନ୍ତା ।"

—"ମାନେ ?"

—"ସେବର୍ଷ ନବକଳେବର ପଡ଼ିଲା । ମୋ' ଗଛକୁ ଦଇତାପତିଏ ସ୍ୱପ୍ନାଦେଶମତେ ଜଗନ୍ନାଥଙ୍କ ଦାରୁ ପାଇଁ ଚିହ୍ନଟ କଲେ । ଭାବିଲେ, ପ୍ରଭୁଙ୍କର କି ଦୟା ! ଯଦି ଆମ ବାଡ଼ିରେ ସେ ଗଛ ଥାଆନ୍ତା, ତେବେ ଯବନ ଘର ବୋଲି ସେ ଗଛ କ'ଣ ସେମାନେ ନେଇଥାନ୍ତେ ? ମୋ' ଗଛରେ ପ୍ରଭୁଙ୍କ କଳେବର କ'ଣ ତିଆରି ହୋଇଥାନ୍ତା ?"

ସେ କହିଁ କହିଁ ହୋଇ କାନ୍ଦିପକାଇଲେ । ମୁଁ ପଚାରିଲି, "ତୁମର ଏ ଜଗନ୍ନାଥଙ୍କ ବିଶ୍ୱାସ ଯୋଗୁଁ ଶାଶୁଘରେ କେହି ଭୁଲ ବୁଝିନ୍ତିନ ତ ?"

ସେ କହିଲେ, "ନା, ମୋ' ସ୍ୱାମୀ ଦେବତାଭଳିଆ, ଆମେ ସବୁ ଜଗନ୍ନାଥଙ୍କୁ ପୂଜା କରୁ । ଦେଖୁନାହାନ୍ତି, ଖିରି ଭୋଗ ପାଇଁ କେତେ କଷ୍ଟରେ ଗୁଡ଼ଚାଉଳ ନେଇ ଗାଁରୁ ଆସିଛନ୍ତି ଆଜି ।"

ଏଥର ସେ ତାଙ୍କ କଥାର ପରିସମାପ୍ତି ଆଡ଼କୁ ଆସିଲେ, ମୁସଲମାନ ହେବା ଯୋଗୁଁ କାଲି ତାଙ୍କ ମନ୍ଦିର କ ଭୋଗ ମାତ୍ର ହେବ, ଆମେ କେହି ସେହି ଭୟରେ ମନ୍ଦିର ଭିତରକୁ ଯାଉନା । ମାତ୍ର ଯୋଉ ସାତଦିନ କଥା କହୁଥିଲି,

ସେ ସାତଦିନ ମଙ୍ଗଳଆଳତିଠାରୁ ପହଣ୍ଡି ପର୍ଯ୍ୟନ୍ତ ମୁଁ ରଥ ଉପରେ ଠାକୁରଙ୍କ ହିଁ ଗୀତ ଦେଉଥେ । କିନ୍ତୁ...” ପଚାରିଲି, “ରହିଗଲେ ଯେ...କ’ଣ ହେଲା ।”

ହରକାନ୍ତର ଉଭୟ ଅଭିବ୍ୟକ୍ତି ତାଙ୍କ ମୁହଁରେ ଫୁଟାଇ କହିଲେ, “ରଥରେ କିନ୍ତୁ ମୁଁ କେବେ ଜଗନ୍ନାଥଙ୍କୁ ଦେଖିପାରେନ ।”

—“ମାନେ ?”

—“ମୁଁ ଦେଖେ କେବଳ ଏକ ବିରାଟ ନମ୍ରଗଛ ଯେମିତି ରଥ ଉପରେ ଠିଆ ହୋଇଛନ୍ତି । ତା’ର ଛାଇ ତଳେ ଯେମିତି ସାରା ଜଗତ ଆଶ୍ରୟ ନେଇଛି ।”

—“କେବେ ଜଗନ୍ନାଥଙ୍କୁ ଦେଖିନା ?”

—“ନା, କିନ୍ତୁ ମୋର ସେଥିପାଇଁ ଦୁଃଖ ନାହିଁ ନ ଦେଖିବା ଯୋଗୁଁ । ମୋର ଆନନ୍ଦ ମୁଁ ମୋ ଗଛକୁ ଦେଖୁଛି । ମୋ ଗଛ ମତେ ଦେଖୁଛନ୍ତି ।”

ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଚାହିଁ ରହିଲି । ସେ କହିଲେ, “ଶୁଣ, ଥରେ ଗଛ ମାଗିଲେ ଖିର । ବଡ଼ଦାଣ୍ଡରେ ରଥ ଅଟକିଥିଲା । ମୁଁ ଖିର ରାନ୍ଧି ଆଖିବୁଜି ତାଙ୍କୁ ଧ୍ୟାନ କରିବାବେଳେ ଦୁଇଟି ଧଳା ଆଉ କଳା କୁକୁର ଆସି ଖିରତକ ହାଣ୍ଡିରୁ ଚାଟିଦେଇ ଚାଲିଗଲେ । ତୁମେ ମୋ ଉପରେ ଅତି ବିରକ୍ତ ହେଲ । ରଥ ଆଗରେ ଖିର ରାନ୍ଧୁଛ ବୋଲି । ମୁଁ ମୁଣ୍ଡ ପାତି ସେଦିନ ତୁମ କଥା ସହିଥିଲି । ମନେ ପଡ଼ୁଛି ?

ମୁଁ ଲଜ୍ଜାନୁତାପରେ ‘ହଁ’ ଭରିଲି । ପଚାରିଲି, “ସେ କୁକୁର ଦି’ଟା ।”

—“ଜାଣିପାରିଲନି ? ଦି’ଠାକୁର—ବଳଭଦ୍ର ଆଉ ମୋ ଗଛ ।”

ସେ ପୁଣି ଭାବବିହ୍ୱଳ ହୋଇ କାନ୍ଦି ଉଠିଲେ । ହଠାତ୍ ସେ ସଚେତନ ହୋଇ ଉଠିଲେ, “ସନ୍ଧ୍ୟା ହେଲାଣି, ଯାଉଛି ଆଳତି କରିବି । ତୁମେ ରହିବ ଆଳତି ଦର୍ଶନ କରିବାକୁ ?”

ମୁଁ ‘ହଁ’ ଭରିଲି । ସେ ମୋତେ ଘର ଭିତରକୁ ଯିବାକୁ ନିର୍ଦ୍ଦେଶ ଦେଲେ । ପରଦା ଖୋଲିବାରୁ ଚାହିଁ ଦେଖିଲି ଘରର ପଶ୍ଚିମ କାନ୍ଥକୁ ଲାଗି ରତ୍ନସିଂହାସନ ଭଳି ମଣ୍ଡପ ଉପରେ ବିଜେ କରିଛନ୍ତି ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ, ସୁଦର୍ଶନ, ନୀଳମାଧବ, ଭୂଦେବୀ ଓ ଶ୍ରୀଦେବୀ ।

ସେ ଆଳତି କଲେ । ଆଳତି ଆଲୁଅରେ ଝଲସି ଉଠୁଥିବା ଦେବଦେବୀଙ୍କ ମୁହଁର ବିଭା ଓ ତାଙ୍କ ମୁହଁର ବିଭା ମତେ ବିଭୋର କରିଦେଲା ।

ଆଳତି ପରେ ସେ ମତେ ଅପୂର୍ବ ସୁନ୍ଦର ପ୍ରସାଦ ବାଢ଼ିଦେଲେ ।

ସେଇଦିନୁ ଏମିତି ଦିନ ନାହିଁ, ଯେଉଁଦିନ ଶବନମ୍ ପୁରୀରେ ଥିଲାବେଳେ ମୁଁ ତାଙ୍କ ଘରକୁ ନ ଯାଇଛି ଓ ସେଠି ପ୍ରସାଦ ନ ଖାଇଛି ।

●




ଏ କଥା'ଟା ଲୋକଙ୍କ ଆଗରେ ପ୍ରକାଶ କରିବାକୁ ବହୁ ଆଗରୁ ଇଚ୍ଛା' କରିଥିଲି । ମାତ୍ର କଥାର ପ୍ରଧାନ ନାୟକ ମତେ ବହୁବାର ବାରଣ କରିଥିଲେ· ଯେମିତି ଏଇଟା ଅନ୍ତତଃ ଆଠ ଦଶବର୍ଷ ଅଛପା ରହେ । ଏ ସମୟସୀମାର କାରଣ· ମୁଁ ଯେତେଥର ପଚାରିଛି, ସେତେଥର ଲକ୍ଷ୍ୟ କରିଛି ମୋ' ପ୍ରଶ୍ନର ଉତ୍ତର ସ୍ୱରୂପ ସାମାନ୍ୟ ସ୍ମିତହାସ୍ୟ ତାଙ୍କ ମୁଖମଣ୍ଡଳରେ ଫୁଟିଉଠିଛି । ପରେ ଅବଶ୍ୟ ମୁଁ ଏ ପ୍ରଶ୍ନର ଉତ୍ତର ପାଇଲି ।

ତେବେ ଯାହାହେଉ, ତାଙ୍କ ସାଙ୍ଗରେ ମୋର ଆଜ ଆଠ ଦଶବର୍ଷ ହେବ ଦେଖା ନାହିଁ । ତେଣୁ ଆଜି ଏ କଥା'ଟା ସବୁରି ଆଗରେ ଖୋଲି କହିବାକୁ ସୁଯୋଗ· ପାଇଲି ।

ଆଠ ଦଶବର୍ଷ ତଳର ଅତୀତକୁ ଫେରି ଗୁହିଁଲେ ମୋର କଢ଼ଦଦନଆଁ ଶ୍ରୀମଦ୍ଧର ଦର୍ଶନ ସମୟରେ ଯେଉଁ ଚରିତ୍ରଗୁଡ଼ିକ ମନେପଡ଼ନ୍ତି, ତା' ଭିତରୁ ସେ· ଥିଲେ ଜଣେ । ତାଙ୍କ ଚେହେରା ଏବେ ମୋର ସ୍ପଷ୍ଟ ମନେଅଛି । ସେ ଚେହେରାରେ:

କିଛୁ ଚିହ୍ନିବାର ନଥିଲା । ଯେକୌଣସି ଲୋକ ସେ ଚେହେରା ଦ୍ୱାରା ପ୍ରଭାବିତ ହେବ । ଅତି ମାମୁଲି କଥା । ଚନ୍ଦ୍ରରେ କଳଙ୍କ ପରି ତାଙ୍କ ଶରୀରରେ ଯେଉଁ ଖୁଣଟି ରହିଥିଲା, ତାହା ପ୍ରକୃତରେ ବିଧାତା ସୃଷ୍ଟିର ବିଡ଼ମ୍ବନା କହିଲେ ଭୁଲ ହେବ ନାହିଁ । ତାହା ହେଉଛି ସେ ଥିଲେ ଚକ୍ଷୁହୀନ—ଜନ୍ମାନ୍ଧ ।

ମନ୍ଦିରର ନଟଶାଳ ଓ ପାଟ ଅଗଣାରେ ମୁଁ ଯେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ ବସେ, ସେ ସେହି ଦୁଇଟି ସ୍ଥାନକୁ ବାଡ଼ି ଠକ ଠକ କରି ଆସନ୍ତି ଏବଂ ଅଧିକାଂଶ ଦିନ ତାଙ୍କ ସହିତ ମୋର ନଟଶାଳ ତଳେ ହେଉ ବା ପାଟ ଅଗଣାରେ ହେଉ ଆଳାପ ଆଲୋଚନା ହୋଇଥାଏ । ଏଇ ଆଳାପ ଆଲୋଚନା ବେଳେ କେବଳ ମୋର ସାନ ଝିଅଟି ଏକମାତ୍ର ନୀରବଶ୍ରୋତା ହୋଇ ବସିଥାଏ । କିନ୍ତୁ ପ୍ରତ୍ୟେକଥର ତାଙ୍କର ମୋର ଦୈନିକ ଦେଖା ପୂର୍ବରୁ ସେ ପଚାରିଥାନ୍ତି ସାଙ୍ଗରେ ଝିଅ ଅଛି କି ନା । ମୁଁ 'ହଁ' ଭରେ । ଏଇ ତିନିଜଣିଆ ଦୃଶ୍ୟରେ ଯଦି କୌଣସି କାରଣରୁ ଝିଅ ଉପସ୍ଥିତ ନ ଥାଏ, ଅର୍ଥାତ୍ ଝିଅ ଯଦି ମୋ' ସହିତ ମନ୍ଦିରକୁ ନ ଯାଇଥାଏ, ତେବେ ମନ୍ଦିରରୁ ଫେରିଲା ପରେ ସେ ମତେ ତା' ପଢ଼ାଘରୁ ଦଉଡ଼ି ଆସି ପଚାରେ, "ଅନ୍ଧ ମଉସା ଦେଖା ହୋଇଥିଲେ ତ ବାପା" ? ମୋ' ମୁହଁରୁ ଅସ୍ତିବାଚକ ଉତ୍ତର ଶୁଣିଲା ପରେ ମୁଁ ଲକ୍ଷ୍ୟ କରେ ତା' ମୁଖମଣ୍ଡଳ ପ୍ରସନ୍ନ ହୋଇ ଉଠେ । ମୁଁ ମନେ ପକାଏ ଅନ୍ଧ ବୁଢ଼ା ମଧ୍ୟ ସେଦିନ ଝିଅ ସାଙ୍ଗରେ ଆସିଛି କି ନାହିଁ ପଚାରି ମୋ'ଠାରୁ ଯେତେବେଳେ ନାସ୍ତିସୂଚକ ଉତ୍ତର ପାଆନ୍ତି, ତାଙ୍କ ମୁଖମଣ୍ଡଳ ବିଷାଦପୂର୍ଣ୍ଣ ହୋଇ ଉଠେ, ବହୁତ ଦିନ ପାଇଁ ମୋ' ପାଇଁ ଏହା ଏକ ରହସ୍ୟ ହୋଇ ରହିଥିଲା ।

ବୃଦ୍ଧଙ୍କ ସହ ମୋର ଯେଉଁଦିନ ପ୍ରଥମ ସାକ୍ଷାତ ହୋଇଥିଲା, ସେଦିନର କଥୋପକଥନ ମୋର ସ୍ପଷ୍ଟ ମନେ ଅଛି । ସେଦିନ ଦେଉଳର ନଟଶାଳ ବା ପାଟଅଗଣାରେ ବସିବା ସମ୍ଭବ ନ ଥିଲା, କାରଣ ମୂଷଳଧାରରେ ଇନ୍ଦ୍ର ସେଦିନ ବର୍ଷାଞ୍ଜଳି ଢାଳି ଦେଉଥାନ୍ତି, ଜଗନ୍ନାଥଙ୍କ ମନ୍ଦିର ଗାତରେ । ଘଡ଼ଘଡ଼ି ଚଡ଼ଚଡ଼ିର ଭୟଙ୍କର ଗର୍ଜନ ଓ ଝଲକ ସାଙ୍ଗକୁ ସମୁଦ୍ରଆଡ଼ୁ ବହି ଆସୁଥିବା ବରଫ ପବନ ବୁଢ଼ାର ପଞ୍ଜରା ହାଡ଼କୁ ଥରାଇ ଦେଉଥାଏ । ସେତେବେଳେ ଆମେ କେତେଜଣ ଜାକିଜୁକି ହୋଇ ଲକ୍ଷ୍ମୀଙ୍କ ମନ୍ଦିର ଜଗମୋହନରେ ବସିଥାଉ । ଏଇ ସମୟରେ ଦେଖିଲି, ଓଦା ସର ସର ହୋଇ ସେ ବାଡ଼ି ଠୁକୁ ଠୁକୁ କରି ପହଞ୍ଚିଲେ । ପାଣି ପଡ଼ିଥିବା ଶଙ୍ଖ ମଲ ମଲ ଚଟାଣ ଉପରେ ତାଙ୍କର ବାଡ଼ିର ଗୁବ ଜମିକରି ନ ରହି ଖସିଯାଉଥିବାରୁ ସେ କାଳେ ପଡ଼ିଯିବେ, ସେଥିପାଇଁ ମୁଁ ତାଙ୍କୁ ଧରିପକେଇ ପାଖରେ ବସାଇଲି । ସେ ମୋ' ହାତକୁ ଧରି ସେଦିନ ତଳେ ବସି ପଡ଼ୁ ପଡ଼ୁ କହିଲେ, "ଧନ୍ୟବାଦ, କି ବର୍ଷା, ମୁଁ ଗୋଟାପଣେ ଓଦା ହୋଇଗଲି ।"

ତାଙ୍କ ମୁହଁରୁ କଥା ନ ସରୁଣୁ ସୁଦ୍ଧି ଦେଖିଲି ମୋର ପାଞ୍ଚବର୍ଷର ଝିଅ ତା' ଧରିଥିବା ତଉଲିଆରେ ତାଙ୍କୁ ପୋଛି ପକାଉଛି । ସେ ମତେ ପଚାରିଲେ, "ଏ କିଏ ?" ମୁଁ ଉତ୍ତର ଦେଲି, "ମୋ' ଝିଅ, ଆପଣଙ୍କୁ ପୋଛି ପକାଉଛି ।" ସେ ମୋ ଝିଅ ହାତଟି ଧରି ପକେଇ ତା' ନାଁ ପଚାରିଲେ ଓ ତା' କଥା ଶୁଣୁ ଶୁଣୁ ସେ ସେଦିନ କେମିତି ଗୋଟାଏ ଚମକ ପଡ଼ି ମତେ ପଚାରିଲେ, "ଏ ଝିଅ କ'ଣ ଆପଣଙ୍କ ସାଙ୍ଗରେ—"

ତାଙ୍କ ପ୍ରଶ୍ନ ସମାପ୍ତି କରିବାକୁ ନ ଦେଇ ମୁଁ କହିଲି, "ମୁଁ ସବୁଦିନ ମନ୍ଦିରକୁ ଆସେ, ଆଉ ଏ ଝିଅଟି ପ୍ରାୟ ସବୁଦିନେ ମୋ' ସାଙ୍ଗରେ ଥାଏ ।" ଝିଅର ହାତକୁ ମଧ୍ୟ ସେ ଆଉଁସି ଦେଲେ ଏବଂ ସ୍ନେହଶୀଳ ସ୍ୱରରେ କହିଲେ, "ହାତ ତ କାଉଁରିଆ କାଠି, କାଚ କିନ୍ତୁ ପିନ୍ଧିଛି ଦଶଦଶଟି" ତାଙ୍କ କଥା ଶୁଣି ସୁନା ଝିଅ ମୋର ଫିକ୍‌କିନା ହସି ପକେଇଲା ।

ସେଇ ପ୍ରଥମ ଦର୍ଶନରୁ ପୂଜାରୀଙ୍କ ଆମ ଭିତରେ ସମ୍ପର୍କ ଘନିଷ୍ଠ ହୋଇ ଉଠିଲା । ତହିଁ ଆରଦିନ ଓ ତା' ପରେ ସବୁଦିନ ସେ ଯେତେବେଳେ ବାଡ଼ି ଠକ୍ ଠକ୍ କରି ଆସନ୍ତି, କେମିତି କେଜାଣି ଟାଣି ହୋଇ ଆମ ବାପଝିଅଙ୍କ ପାଖରେ ଆସି ବସନ୍ତି ଓ ଆମେ ଏଣୁତେଣୁ ଭଲମନ୍ଦ ଦୁଃଖସୁଖ ହେଉ । ଏବେ ମୁଁ ପୂର୍ବାପର ସଙ୍ଗତି ମନେ ପକାଇ ଦେଖୁଛି, ଆମ କଥା ଭିତରେ ସେ ନିଶ୍ଚୟ ମନ୍ଦିରରୁ ଚୂନ ଛଡ଼ାଇବା ବିଷୟରେ ମତେ କିଛେଇ କରି ପଚାରନ୍ତି । ସେଗୁଡ଼ିକ ହେଲା, 'ଚୂନ ଛଡ଼ାଇବା ନିଷ୍ପତ୍ତି କେଉଁଠାଏ ଗଲା, ମନ୍ଦିର ଶାସନରେ ଥିବା ହାକିମମାନଙ୍କର ଏ ଦିଗରେ ମତ କ'ଣ, ଗଜପତି ମହାରାଜା କ'ଣ କହୁଛନ୍ତି, ସରକାରଙ୍କର ଏ ଦିଗରେ ଶେଷ ମତ କ'ଣ, ସାଧାରଣ ଲୋକେ ଏହାକୁ କେମିତି ଗ୍ରହଣ କରୁଛନ୍ତି, ଚୂନ କିଏ ଛଡ଼ାଇବେ, ସେମାନେ କୁଶଳୀ କାରିଗର କି ନା, ଚୂନ ଛଡ଼ାଇବାବେଳେ ମନ୍ଦିରର ମୂର୍ତ୍ତି କିଛି ନଷ୍ଟ ହେବ କି ନା, ଚୂନ ଛଡ଼ାଇବା ପରେ ମନ୍ଦିରକୁ କେମିତି ସଂରକ୍ଷଣ କରାଯିବ, ଇତ୍ୟାଦି, ଇତ୍ୟାଦି ପଚାରି ମତେ ବ୍ୟତିବ୍ୟସ୍ତ କରିପକାନ୍ତି । ପ୍ରଥମେ ପ୍ରଥମେ ତାଙ୍କ ପ୍ରଶ୍ନାବଳୀର ସହଜ ସରଳ ଉତ୍ତର ସ୍ୱାଭାବିକ ଭାବେ ଦେଉଥିଲି, ତା'ପରେ ଏଇ ପ୍ରଶ୍ନଗୁଡ଼ିକର ଉତ୍ତର ଦେବାବେଳେ କେମିତି ଚିଡ଼ ଉଠିଥିଲି ମୋର ଏବେ ବି ମନେ ପଡ଼ୁଯାଉଛି । ମତେ ଥରେ ଥରେ ବିରକ୍ତ ହେବାର ଲକ୍ଷ୍ୟକରି ସେ ନରମ ସ୍ୱରରେ କହନ୍ତି, "ଏମିତି ଟିକେ ମନ ବୁଝାଇବା ପାଇଁ ପଚାରୁଛି । ଆଖିଥିବା ଲୋକ ଆଉ ଆଖି ନ ଥିବା ଲୋକ ଭିତରେ ଆକାଶ ପାତାଳ ପ୍ରଭେଦ । ସକାଳ ସୂର୍ଯ୍ୟର ନାଲି ଛଟାଠାରୁ ଆରମ୍ଭ କରି ବୁଡ଼ିଲା ସୂର୍ଯ୍ୟର ନାଲି ଟହ ଟହ ରୂପ ପର୍ଯ୍ୟନ୍ତ ସବୁ ଦେଖି ଆନନ୍ଦ ପାଏ ଆଖିଥିବା ଲୋକ, ସବୁ ପାଖ ମଣିଷଙ୍କୁ ଦେଖି ତାଙ୍କୁ ସ୍ନେହ ଆଦର କରେ, ଖାଇବା ପିନ୍ଧିବା ଜିନିଷଠାରୁ ଆରମ୍ଭ କରି ଏ ସଂସାରର ସକଳ ଜିନିଷ

ତା' ଆଖିରେ ନିହାତି ମାମୁଲି, ହେଲେ ଅନ୍ଧ······। ସେ ଆଉ କହି ନ ପାରି ଯେତେବେଳେ ଦୀର୍ଘନିଃଶ୍ୱାସ ପକାନ୍ତି, ମୁଁ ମୋ ବିରକ୍ତ ହେବା ଦୋଷ ଯୋଗୁଁ ଅନୁତାପରେ ଭାଙ୍ଗିପଡ଼ି କୁହେ, 'ନାଇଁ ନାଇଁ ଆପଣ ଯାହା ପଚାରିବାର ପଚାରନ୍ତୁ, ମୁଁ ପ୍ରସ୍ତୁତ ଅଛି ସବୁ ଉତ୍ତର ଦେବାକୁ , ଏମିତି ଚିନ୍ତା କହିଦେଲି···କିଛି ଭାବିବେନି ।"

ସେ କହନ୍ତି, 'ଏଥିରେ ଭାବିବାର କ'ଣ ଅଛି ? ଥିଲାବାଲା କଥାରେ ନଥିଲାବାଲା ଭାବିଲେ ଆଉ ଚଳିବ । ସଂସାରରେ ଥିଲାବାଲାର ଦୟା, ଦକ୍ଷିଣା ଉପରେ ନଥିଲାବାଲା ବହୁ ନିର୍ଭର ରଖିଥାଏ ।'

ତାଙ୍କର ଏ ପ୍ରକାର ମନ୍ତବ୍ୟ ଶୁଣି ମୋ କୁନିଝିଅ କ'ଣ ବୁଝେ କେଜାଣି, ମତେ ଆକଟ କରି କହେ, "ବାପା, ତୁମେ ଅନ୍ଧ ମଉସାଙ୍କ ମନରେ ଦୁଃଖ ଦିଅନା, ସେ ଯାହା ପଚାରୁଛନ୍ତି ଠିକେ ହଁଏ ହଁଏ କହୁନା ।" ମୋ ମା କଥାରେ ମୁଁ ହଁ ଭରି କହେ, "ହଁ ମା', ଏଥର ଆଉ ଭୁଲ କରିବିନି ।"

ଦିନେ ଆମେ ବାପଝିଅ ମନ୍ଦିରରେ ପହଞ୍ଚିଲାବେଳକୁ ଶୁଣିଲୁ ମନ୍ଦିରରେ ବହୁଲୋକ କଥା ହେଉଛନ୍ତି କେମିତି ସନ୍ଧ୍ୟାଳତିବେଳେ ହଠାତ୍ କଣାଚଳ ଆଉ ପାଟଅଗଣା ଧୂଆଁ ହୋଇଗଲା, ବଜ୍ର ପଡ଼ିଲା ପରି ମନ୍ଦିରରେ କାନଅତଡ଼ା ଶବ୍ଦ ହେଲା, ଲୋକେ ସମସ୍ତେ କାଠ ହୋଇଗଲେ । ଦେଖିଲାବେଳକୁ ବିମଳା ମନ୍ଦିରକୁ ମୁହଁ କରିଥିବା ମନ୍ଦିର ଦେହରୁ ଚୂନ ଅତଡ଼ାଏ ଖସିପଡ଼ି କଣାଚଳ ଗ୍ଲାଇ ହେଇଯାଇଛି ପରନ୍ତ ପରନ୍ତ ଚୂନରେ । ଝିଅ ହଠାତ୍ ପାଟିକରି କହିଉଠିଲା, "ବାପା ! ଓ ସେଠି ଦେଖ ଏକାଦଶୀବନ୍ଧ ଜାଗାରେ କେମିତି ଅନ୍ଧମଉସା ଚୂନକୁ ସାଉଁଟି ସାଉଁଟି କ'ଣ ଖୋଜୁଛନ୍ତି ।" ଝିଅ କଥା ଶୁଣି ମୁଁ ତାଙ୍କ ପାଖକୁ ଯାଇ କ'ଣ ଖୋଜୁଛନ୍ତି ବୋଲି ପଚାରିବାରୁ ସେ ଉତ୍ତର ଦେଲେ, "ଏତେ ବଡ଼ ଦଲକା ଚୂନ ଖସିଗଲା, ମୁଁ ଭାବିଲି କାଳେ କୋଉ ମୂର୍ତ୍ତି ଅବା ଖସିପଡ଼ିଥିବ, ତେଣୁ ଖୋଜୁଥିଲି ।"

ମୁଁ ପଚାରିଲି, 'ମୂର୍ତ୍ତି, ମୂର୍ତ୍ତି କାଇଁକି ଖସିବ ଚୂନ ସାଙ୍ଗରେ ?

ସେ କହିଲେ, "ହଜାର ପାଖାପାଖି ବର୍ଷର ଏ ମନ୍ଦିର । ଚୂନରୁ ବି ଅଠା ଅଂଶ କମିଗଲାଣି, ତେଣୁ ଖସିପଡ଼ିଲାବେଳେ ମନ୍ଦିର ଦେହରୁ ଯଦି ମୂର୍ତ୍ତି ଟାଣି ଆଣିଲା···ତେବେ ଯାହାହେଉ ମୁଁ ଦରଣ୍ଡି ଦରଣ୍ଡି ସବୁ ଦେଖିନେଲିଣି, କିଛି ଖସିନି ।"

ମୁଁ ତାଙ୍କୁ ଚାହିଁ ଦେଖିଲି, ସେ ଯେମିତି ମୂର୍ତ୍ତି ନ ଖସିବା ଯୋଗୁ ବହୁତ ଆଶ୍ୱସ୍ତ ହୋଇଉଠିଛନ୍ତି । ଝିଅ ମୋର କହିଲା, "ମଉସା, ତୁମ ହାତଯାକ ଧଳା ହୋଇଯାଇଛି । ତୁମେ ସେଇଠି ଥା, ମୁଁ ପାଣିଆଣି ତୁମ ହାତ ଧୋଇଦେବି ।"

ତା' କୁନି କୁନି ପାଦରେ ସେ ଦଉଡ଼ି ଗଲା ପାଣି ଆଣିବାକୁ ।

ଆରଦିନ ହଠାତ୍ ସେ ମତେ ପ୍ରଶ୍ନ କଲେ, "ଚୂନ ଛଡ଼ାଇବା ମନ୍ଦିର ବେଢ଼ାରୁ କେତେଫୁଟ ଉଚ୍ଚଯାଏ ଗଲା।" ମୁଁ ତାଙ୍କୁ ଏତିକି ହାତ ଅନୁମାନ କରି କହିବାରୁ ସେ ନାଟ୍ୟକଟା ମଣ୍ଡପ ଆଡ଼କୁ ଯିବାକୁ ମତେ ଅନୁରୋଧ କଲେ। ମୁଁ ତାଙ୍କ କଥା ମାନି ତାଙ୍କ ସାଙ୍ଗରେ ସେଆଡ଼କୁ ଗଲି। ସେ ମତେ କହିଲେ, ଝିଅକୁ ପଇସା ଦିଅନ୍ତୁ ସେ ଯାଇ ଲକ୍ଷ୍ମୀମନ୍ଦିର ଜଗମୋହନରେ ବିକୀ ହେଉଥିବା ଚାଲେଡ଼ୁ କିଣି ସେଇଠି ବସି ଖାଇବ।"

ମୁଁ ଜାଣିଲି ସେ କହୁଛନ୍ତି ଝିଅ ସେଠାରୁ ଗଲେଯାଉ ବୋଲି। ଝିଅର ବି ଖୁସି। ସେ ଲକ୍ଷ୍ମୀଙ୍କ ଦାନ୍ତଭଙ୍ଗା ଗୁଡ଼ଲଡ଼ୁକୁ ଖୁବ ଭଲ ପାଏ। ମନରେ କିନ୍ତୁ ମୋର ଗୋଟିଏ ପ୍ରଶ୍ନ ସେତେବେଳେ ଦେଖାଦେଇଥିଲା, ଝିଅ ଲକ୍ଷ୍ମୀଙ୍କ ଚାଲେଡ଼ୁ ଭଲପାଏ ବୋଲି ସେ ଜାଣିଲେ କେମିତି। ସେ ଫିବାପରେ ମତେ ଅଦ୍ଭୁତ ପଚାରିଲେ, "ନାଟ୍ୟକଟା ମଣ୍ଡପ ଚୂଳ ସିଧା ମନ୍ଦିର ଦେହରେ ଯେଉଁ ଉଲଗ୍ନ ଯୌନମୂର୍ତ୍ତି ଯୁଗଳ ଅଛନ୍ତି, ସେଇ ନାଗମୂର୍ତ୍ତି ଚୂନ ଛଡ଼ାହେବା ପରେ ଅଖଣ୍ଡ ଅଛି ତ ?

ତାଙ୍କ ପ୍ରଶ୍ନ ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି। ଯୌନବଳାସରତା ସେ ନାଗ୍ନ ମୂର୍ତ୍ତି ବିଷୟରେ ସେ ଏତେ ନିର୍ଦ୍ଦିଷ୍ଟ ପ୍ରଶ୍ନ କାହିଁକି ପଚାରୁଛନ୍ତି। ସେ କ'ଣ ଏ ମୂର୍ତ୍ତିକୁ ଦେଖିଛନ୍ତି ? ସେ କ'ଣ ତା' ହେଲେ ଜନ୍ମାନ୍ଧ ନୁହନ୍ତି ?

ମୋ ପ୍ରଶ୍ନର ଉତ୍ତର ପାଇବା ଆଗରୁ ସେ ପଚାରିଲେ, "ନାୟିକାର ପାଦ ପାଉଁଜି ଠିକ୍ ଅଛି କି ନା, ଗଳାର ହାରରେ ଝୁଲୁଥିବା ପଦକ ଅଖଣ୍ଡ ଅଛି ତ, ତା' କଟିର କିଙ୍କିଣୀର ସୂତାସବୁ ଦେହରେ କହାଣମୁନ ବାଜି ନାହିଁ ତ ? ଯେଉଁ ହସ୍ତଲତା ବେଷ୍ଟନୀରେ ସେ ପୁରୁଷକୁ ଆଶ୍ଳେଷି ଧରିଛି, ବାମ ହାତ ଅନାମିକା ଅଙ୍ଗୁଳିରେ ପିନ୍ଧିଥିବା ମୁଦ୍ରିକା ସ୍ପଷ୍ଟ ଅଛି ତ ?"

ଆବେଗ ସମ୍ଭାଳି ନ ପାରି ମୁଁ ପଚାରିଲି, "ଆପଣ ପରା ଜନ୍ମାନ୍ଧ ? ତେବେ ଏସବୁ।"

ସେ ମୋ' କଥା ଶୁଣି ହସି ହସି ଗଡ଼ିଗଲେ। ମୁଁ ଏ ପ୍ରକାର ପରିସ୍ଥିତିରେ କିଛି ବୁଝିପାରୁ ନ ଥାଏ। ଏ ବ୍ୟକ୍ତିବିଶେଷ ମୋ ପାଇଁ ରହସ୍ୟପୂର୍ଣ୍ଣ ହୋଇ ଉଠିଲେ। ମୁଁ ସ୍ପଷ୍ଟ ସ୍ୱୀକାର କଲି, "କିଛି ବୁଝିପାରୁନି, ମତେ ଆପଣଙ୍କ ପ୍ରଶ୍ନ କେମିତି କେମିତି ଲାଗୁଛି।"

ତା' ପରେ ବାଧ୍ୟ କଲାରୁ ସେଇ ଯୌନକ୍ରିୟାରତା ନାୟିକା ବିଷୟରେ ସେ ପଚାରିଥିବା ମୁଁ ସମସ୍ତ ପ୍ରଶ୍ନର ଉତ୍ତର ଦେଲି।

ସେ ମୋ କାନ୍ଧ ଉପରେ ତାଙ୍କ ଡାହାଣ ହାତ ପକାଇ କହିଲେ, 'ହଁ, ମୁଁ ତୁମ ସବୁ ପ୍ରଶ୍ନର ଏଥର ଉତ୍ତର ଦେବି। ଜନ୍ମାନ୍ଧ ହେଲେ ବି ମୁଁ ଏ ମୂର୍ତ୍ତି ବିଷୟରେ......।'

ହଠାତ୍ ସେ ଅଟକି ଯାଇ ପଚାରିଲେ, "ଝିଅ କେଉଁଠି ?"

ମୁଁ କହିଲି ଲକ୍ଷ୍ମୀଙ୍କ ପାହାଚରେ ବସି ଭୋଗ ଖାଉଛି ।

ସେ କହିଲେ, "ବେଶ୍, ବେଶ୍ ଠିକ୍ ଅଛି । ଆପଣଙ୍କ ପ୍ରଶ୍ନର ଉତ୍ତର ମୁଁ ଏଠି ଦେବିନି ।"

ମୁଁ ପଚାରିଲି, 'ମାନେ ?'

ସେ କହିଲେ, 'ମୋ ସହିତ କୋଣାର୍କ ଯାଇପାରିବେ ।'

ମୁଁ କହିଲି, "କୋଣାର୍କ ? ମାନେ କୋଣାର୍କରେ ମୋ ପ୍ରଶ୍ନର ଉତ୍ତର ଦେବେ ।"

—"ହଁ, ସେଇଠି କହିବି ନୂଆ କଥା—ଝିଅକୁ ନେବେନି । ସେ ଡରିଯାଇପାରେ ।"

ସେଦିନ ତାଙ୍କର ଏ କଥାରେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଝିଅ କାହିଁକି ଡରିବ ? କୋଣାର୍କରେ କ'ଣ କହିବେ ? ମୋ ବହୁ ପ୍ରଶ୍ନାନ୍ଦୋଳିତ ମନକୁ ଆହୁରି ରହସ୍ୟଜାଲରେ ଗୁଡ଼େଇ ଦେଇ ସେ କହିଲେ, "କାଲି ଠିକେ ଦିନବେଳା ଏଇ ଆଲିଙ୍ଗନରତ ଯୁଗଳ ମୂର୍ତ୍ତିଙ୍କୁ ଆଉ ଥରେ ଭଲକରି ଦେଖି ଦେବେ । ଆମେ ସନ୍ଧ୍ୟାବେଳେ କୋଣାର୍କରେ ଦେଖାହେବା । ମୁଁ ଶୁଷ୍କାମନ୍ଦିର ପାହାଚ ପାଖରେ ଆପଣଙ୍କୁ ଅପେକ୍ଷା କରିଥିବି ।"

ତହିଁଆରଦିନ କୋଣାର୍କରେ ମୁଁ ପହଞ୍ଚି ତାଙ୍କୁ ଶୁଷ୍କା ମନ୍ଦିର ପାହାଚ ପାଖରେ ଗୋଡ଼ ଲମ୍ବେଇ ବସିଥିବାର ଦେଖିଲି । ସେ ଯେମିତି ଥକ୍କା ହୋଇ ଗୋଡ଼ ଲମ୍ବେଇ ବସିଥାଆନ୍ତି, ତାଙ୍କ ବାଡ଼ିଟି ସେମିତି ଶ୍ରାନ୍ତକ୍ଲାନ୍ତ ହୋଇ ଲମ୍ବା ହୋଇ ଗଡ଼ିଯାଇଥାଏ ତାଙ୍କ ଗୋଡ଼ ପାଖରେ । ମୋ ପାଦ ଶବ୍ଦରୁ ସେ ଜାଣିପାରିଲେ ମୁଁ ପହଞ୍ଚିଗଲିଣି ବୋଲି । ତେଣୁ ମତେ ଲକ୍ଷ୍ୟ କରି କହିଲେ, "ଠିକ୍ ବେଳେ ଆପଣ ପହଞ୍ଚିଗଲେ । ମୁଁ ବି ଏଇ ଘଡ଼ିକ ଆଗରୁ ପହଞ୍ଚିଲି ।"

କୋଣାର୍କ କଣ୍ଢେଇଟି ସେଦିନ ଜହ୍ନ ଆଲୁଅରେ ଗାଧୋଇ ପଡ଼ିଥାଏ । ପରିବେଶ ସାମାନ୍ୟ କୁହୁଡ଼ିଆ ଥାଏ । ଦରିଆ କୂଳରୁ ମେଲିଦେଇଥିବା କୋଉ ଗୋଟାଏ ମଉଆଳି ଗାୟକର ଗୀତ ଲହରୀ ସମୁଦ୍ର ପବନରେ ଭାସି ଭାସି ଆସୁଥାଏ । ଅଦୂରରେ କିଏ ଜଣେ ବଂଶୀରେ ତୋଳିଥାଏ ହଜିଲା ଖୋଜିଲା ଭାବର ସୁନ୍ଦର ମୂର୍ଚ୍ଛନାଟିଏ ।

ତାଙ୍କର କହିବାଭଙ୍ଗୀ ବି ସେଦିନ ସେ ପରିବେଶରେ ମତେ ଅଲଗା ଜଣାପଡ଼ିଲା । ସେ ମତେ ନିର୍ଦ୍ଦେଶ ଦେଲେ, ''ଏଇ ବାଡ଼ ଦିଗରେ ମନ୍ଦିର ପାଖୁଯାଇ ଆପଣ ମନ୍ଦିର ଦେହକୁ ଲାଗି ଠିଆ ହେଲେ ମୁଣ୍ଡ ଉପରେ ଯେଉଁ ଅଳସକନ୍ୟା ଦେଖିବେ, ତା' ମୁହଁକୁ ଠିକେ ଭଲକରି ନିରୀକ୍ଷଣ କରି ଆସନ୍ତୁ ।''

ମୁଁ ମନ୍ତ୍ରବଶ ପରି ଯାଇ ଯାହା ଦେଖିଲି ଆଶ୍ଚର୍ଯ୍ୟ ହୋଇଗଲି । ଶ୍ରୀମନ୍ଦିର ନାଟକଟା ମଣ୍ଡପର ସେଇ କାମାସକ୍ତା ନାରୀର ମୁଖଲାବଣ୍ୟ ଓ ଏ ଅଳସକନ୍ୟାର

ମୁଖପଦ୍ମ ଭିତରେ ବିଲେ ବି ପାର୍ଥକ୍ୟ ନାହିଁ । ସେ ଦୁହେଁ ଯେମିତି ଏକ ଓ ଅଭିନ୍ନ—କେବଳ ଭିନ୍ନ ପରିବେଶ ଓ ଭିନ୍ନ ଭଙ୍ଗୀରେ ବିରାଜମାନ ।

ଫେରିଆସି ଅନ୍ଧବୁଢ଼ାଙ୍କୁ ସବୁକଥା କହିବାରୁ ସେ କହିଲେ, "ଆପଣଙ୍କ ନିରୀକ୍ଷଣ ଷୋଳଅଣା ଠିକ୍ ।"

ମୁଁ ତାଙ୍କୁ ପଚାରିଲି, "ଏ ଦୁଇମୂର୍ତ୍ତିର ସୃଷ୍ଟିକର୍ତ୍ତା କ'ଣ ଜଣେ ?"

"କେବଳ ସୃଷ୍ଟିକର୍ତ୍ତା ଜଣେ ନୁହେଁ, ସୃଷ୍ଟ ନାରୀ ବି ଜଣେ", ମତେ ରହସ୍ୟଜାଲରେ ସେ ଆବଦ୍ଧ କରିଦେଲେ ।

ମୁଁ ପଚାରିଲି, "ମାନେ ?"

ସେ ସାମାନ୍ୟ ହସି କହିଲେ, "ଶିଳ୍ପୀ, ଚିତ୍ରକର, କବି ବା ଲେଖକ କଳ୍ପନାବିଳାସୀ ହେଲେହେଁ ସେମାନଙ୍କର କଳ୍ପନା ଉଦ୍ଭଟ ନୁହେଁ । ସେମାନେ ଯାହାକୁ ଉପଜୀବ୍ୟ କରି ସୃଷ୍ଟି କରିଥାନ୍ତି, ସେ ନିଶ୍ଚୟ ବାସ୍ତବ କ୍ଷେତ୍ରରେ ଥାଏ । ଯେଉଁ ଶିଳ୍ପୀ ଏଇ ନାରୀମୂର୍ତ୍ତି ଦୁଇଟିକୁ ତା ନିର୍ବାଣମୁନରେ ପଥରପୃଷ୍ଠରେ ଆଙ୍କି ଦେଇଛି, ସେଇ ଶିଳ୍ପୀର ମାନସୀ ବାସ୍ତବତଃ ରକ୍ତମାଂସର ଜୀବଟିଏ, ଯେତେବେଳେ ଏଇ ସଂସାରରେ ଥିଲା ।"

ମୁଁ କହିଲି, "ଆପଣ ଏସବୁ କ'ଣ କହୁଛନ୍ତି ?"

ସେ କହିଲେ, "ଯାହା କହୁଛି ଅନେକଲିଖ କଥା କହୁଛି ।"

ମୁଁ ଚମକିପଡ଼ି ପଚାରିଲି, "ମାନେ, ଆପଣ କ'ଣ କହୁଛନ୍ତି ।"

ସେ କହିଲେ, "ଧୈର୍ଯ୍ୟ ଧରନ୍ତୁ, ସବୁ କହିବି । ମୁଁ ସେଇ ଶିଳ୍ପୀ, ଯେ ନିହାଣମୁନରେ ଉଭୟ ସ୍ଥାନରେ ଏଇ ମୂର୍ତ୍ତି ଆଙ୍କି ଦେଇଥିଲି ।"

ମୋତେ ଆଉ ପ୍ରଶ୍ନ କରିବାକୁ ନ ଦେଇ ସେ କହିଚାଲିଲେ, "ଏ ଜନ୍ମରେ ପରମାତ୍ମା ମତେ ଅନ୍ଧ କରିଦେଲେ ଚିନା, ପୁରୁଷୋତ୍ତମଙ୍କ କୃପାରୁ ମୋର ସେଇ ଦୂରାତୀତ ଜନ୍ମ ବୃତ୍ତାନ୍ତ ଏବେ ବି ସବୁ ମନେଅଛି । ତେଣୁ ମୁଁ ସହଜରେ ସବୁକଥା କହିପାରୁଛି ଓ ପ୍ରମାଣ ବି ଦେଇପାରୁଛି ।"

ଟିକିଏ ରହିଯାଇ ସେ ପୁଣି କହିଲେ, "ତେବେ ଆପଣଙ୍କୁ ଏଇ ପ୍ରସଙ୍ଗରେ କୋଣାର୍କ ମନ୍ଦିର ତିଆରିବେଳର ସେଇ ଅଭୁଲା ଦିନର କାହାଣୀଟି କହୁଛି ଶୁଣନ୍ତୁ । ମନ୍ଦିର ନିର୍ମାଣବେଳେ ଶିଳ୍ପୀମାନଙ୍କ ଭିତରେ ପ୍ରତିଯୋଗୀ ମନୋବୃତ୍ତି ସୃଷ୍ଟି କରିବାକୁ ରାଜା ଇଚ୍ଛାକଲେ । ସବୁଠାରୁ ସୌନ୍ଦର୍ଯ୍ୟପୂର୍ଣ୍ଣ ମୂର୍ତ୍ତିର କାରିଗରଙ୍କୁ ପୁରସ୍କୃତ କରି ତା' ମୁଣ୍ଡରେ ପାଟ ବାନ୍ଧିବେ ବୋଲି ଘୋଷଣା ପରେ ପଣ୍ଡିତ- ଅଭିଜ୍ଞ ରାଜକବି ନାମକରା ଶିଳ୍ପୀ ଆସି ଯେତେବେଳେ ସବୁ ମୂର୍ତ୍ତି ପରଖିଲେ, ସେତେବେଳେ ମୋର ମୂର୍ତ୍ତି ରୂପରେ ସମସ୍ତଙ୍କଠାରୁ ବଳି ପଡ଼ିଲା ଓ ମୋ ମୁଣ୍ଡରେ ଶିରପା ବନ୍ଧା ହେବ ବୋଲି ରାଜା ଘୋଷଣା କଲେ । ସେତେବେଳେ ସହକର୍ମୀ ମୋର କାରିଗର ଭାଇମାନେ ଈର୍ଷାରେ ଜଳିପୋଡ଼ି ଆପତ୍ତି କଲେ, "ଏ ମୂର୍ତ୍ତି କଳ୍ପନାପ୍ରସୂତ ନୁହେଁ, କାରିଗର ନିଜ ଧର୍ମପତ୍ନୀର ମୁହଁକୁ ନିହାଣ ମୁନରେ ଥୋଇ ଦେଇଛି ମଣିମା ।" ତା'ପରେ ମଣିମାଙ୍କର ପ୍ରଶ୍ନର ଉତ୍ତର ଥିଲା

ମୋର ସରଳ ସ୍ୱୀକାରୋକ୍ତି । ସେହି ସ୍ୱୀକାରୋକ୍ତି ପରେ ମୁଁ ମଣିମାଙ୍କର ଆଦେଶକୁ ଅପେକ୍ଷା କରିଥିଲି ମୁଣ୍ଡପାତ ।

ମଣିମା କିଛି ସମୟ ଚିନ୍ତାକରି ଘୋଷଣା କରିଥିଲେ, "ଆମ୍ଭେ ଜାଣୁନା କେଉଁ ଶିଳ୍ପୀ କାହାକୁ ଅବଲମ୍ବନ କରି ନିହାଣମୂନରେ ତା'ର ସୃଷ୍ଟି କରୁଛି । ଇତିହାସ ଦିନେ ବ ଅନ୍ଧକାର ଗର୍ଭରେ ଲୀନ ହୋଇଯାଇପାରେ । ମାତ୍ର କାଳଜୟୀ ଏଇ ସୃଷ୍ଟିର ସ୍ରଷ୍ଟା ତା'ର ରୂପ ଓ ସୌନ୍ଦର୍ଯ୍ୟ ମହିକରେ ବିଶ୍ୱକୁ ଚମତ୍କୃତ କରିଦେବ । ତେଣୁ ସୌନ୍ଦର୍ଯ୍ୟର ମାପକାଠିରେ ଭବିଷ୍ୟତ ବଂଶଧର ଏ ସବୁର ମାପ କରିବ । ତଦନୁଯାୟୀ ଶିଳ୍ପୀ ପ୍ରଶଂସିତ ହେବ । ତେଣୁ ଯଦିଓ ଏଇ ଶିଳ୍ପୀ ସ୍ୱୀକାର କରୁଛି ଯେ ପାଷାଣ ମୂର୍ତ୍ତି ତା'ର ଧର୍ମପତ୍ନୀର ହିଁ ରୂପାନ୍ତର, ତାଙ୍କର ଅନନ୍ୟ ଶିଳ୍ପକଳା ନିମିତ୍ତ ତାଙ୍କ ମୁଣ୍ଡରେ କାଲି ଶିରପା ବନ୍ଧା ହେବ ।"

ରହସ୍ୟ ଉପନ୍ୟାସ ଭଳି ମତେ ତାଙ୍କ କଥା ଲାଗୁଥିଲା । ସେ କହି ଚାଲିଲେ, "ମୁଁ ସମ୍ମାନିତ ହେଲି । ଯେଉଁଦିନ ସମସ୍ତ କାରିଗରକୁଳ ଭିତରେ ମୋ ମୁଣ୍ଡରେ ଶିରପା ବନ୍ଧାହେଲା, ସେଦିନ ମୋର ଆତ୍ମା ମନ୍ଦିରର ପରମାତ୍ମାଙ୍କୁ ପ୍ରଣାମ ଜଣାଇଥିଲା ସହସ୍ର ସହସ୍ରବାର ।"

—"କିନ୍ତୁ..."

—"ଆପଣ ଧୈର୍ଯ୍ୟ ଧରନ୍ତୁ, ମୁଁ ସବୁ ଖୋଲି କହିବି । ସେତେବେଳେ ଅଚ୍ଛ ମାସାରେ ମୁଁ ଥିଲି ପତ୍ନୀପାଗଳ । ବର୍ଷ ବର୍ଷ ଧରି ଗୃହତ୍ୟାଗୀ ହୋଇ ମୁଁ ଯେତେବେଳେ ମନ୍ଦିର ନିର୍ମାଣରେ ବ୍ୟସ୍ତ ଥିଲି, ମୋ ସାଥିରେ ସବୁବେଳେ ଥିଲା ମୋର ଅଲିଅଳି ଝିଅଟି । ମୋ କ୍ଳାନ୍ତିବେଳେ ସେ ମୋ ଦେହରୁ ଝାଳ ପୋଛିଦିଏ, କାର୍ଯ୍ୟରତ ଥିବା ଅବସ୍ଥାରେ ପାଣି ଓ ପାନ ଦେବାଠାରୁ ଆରମ୍ଭ କରି ଖାଇବା ପରେ ପଥୁରିବାସନ ଧୋଇବାରେ ମଧ୍ୟ ସେ ନିଜକୁ ନିଜେଇ ଦେଉଥିଲା । ତୁମେ ଲକ୍ଷ୍ୟ କରିଥିବ ତୁମ ଝିଅ ।"

ମୁଁ କହିଲି, "ମୋ' ଝିଅ କଥା ଥାଉ ।"

ସେ କହିଲେ, "ମୋ' ଝିଅ ଏବେ ଆପଣଙ୍କ ଝିଅ ହୋଇଯାଇଛି । ସେ ଦିନର ପରିଚୟରୁ ମୁଁ ତା' ହୃଦ ବାରି ଜାଣିପାରିଛି ସେ ଝିଅ କିଏ । ଆପଣ ଲକ୍ଷ୍ୟ କରିଥିବେ ସେ ଝିଅର ମନ ଶିଳ୍ପଶାସ୍ତ୍ର ଆଡ଼କୁ ଆପେ ଆପେ ଢଳି ପଡୁଥିବ । ସେ ଯେମିତି ସ୍ନେହଶୀଳା, ସେମିତି ପ୍ରବୀଣା..."

ମୁଁ ତାଙ୍କଠାରୁ ଆଉ ସବୁ କଥା ଶୁଣିଲି । କେମିତି ଗୋଟାଏ ଅନୁତାପ ଜର୍ଜରିତ ସ୍ୱରରେ ସେ କହିଲେ, "ପରମାତ୍ମାଙ୍କ ମନ୍ଦିର ତିଆରିରେ ନିବିଷ୍ଟ ରହି ମୋର ଆତ୍ମା ସାଂସାରିକ ବିଷୟବସ୍ତୁରେ ଲିପ୍ତ ରହିଲା । ଫଳରେ ପରମାତ୍ମାଙ୍କ ଦୟାରୁ ଜନ୍ମଜନ୍ମପରେ ଏ ଜନ୍ମରେ ଅନ୍ଧ ହୋଇଗଲି । ମୁଁ ପଚାରିଲି, "ଅନ୍ଧ ତାଙ୍କ ଦୟାରୁ ହୋଇଗଲେ ?"

ସେ ହସି ହସି କହିଲେ, "ହଁ, ପରମାତ୍ମାଙ୍କ ଦୟାରୁ ଅନ୍ଧ ହୋଇଗଲି । ଆଖି ଥିଲାବେଳେ ଯାହା ଦେଖିପାରୁଥିଲି, ଅନ୍ଧ ହୋଇ ତା'ଠାରୁ ଅଧିକ ଦେଖିପାରୁଛି ତାଙ୍କ ଦୟାରୁ..."

ତାଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇଗଲା । ଆଖିରୁ ଦ'ଧାର ଲୁହ ବୋହିପଡ଼ିଲା ।

ରାତ୍ରିର ଶେଷ ଯାମ ସେତେବେଳକୁ ହୋଇଗଲାଣି । ମନ୍ଦିରର ପଶ୍ଚିମ ଦିଗକୁ ମୁହଁ କରିଥିବା ନର୍ତ୍ତକୀର ଶିଳାହତ ମୂର୍ତ୍ତି ବେଶ୍ ପରିଷ୍କାର ହୋଇ ଉଠୁଥିଲା ଜ୍ୟୋତ୍ସ୍ନାଧୌତ ପରିବେଶରେ ।

ପଚାରିଲି, "କେବେ ଫେରିବେ ପୁରୁଷୋତ୍ତମ ଧାମକୁ ?"

ସେ ଉତ୍ତର ଦେଲେ, "ସେଠି ତ ସବୁବେଳେ ଥାଏ । ଏଠିକି ତ ଆସିପାରୁନ । ଯେତେବେଳେ ଆସିଛ, ତନ୍ନ ତନ୍ନ କରି ମୁଁ ଦେଖାଇ ଦେଇଥିବା ସବୁ ମୂର୍ତ୍ତିଗୁଡ଼ାକୁ ଦେଖିଦେଇଯିବ ।"

ମୁଁ ପୁଣି ପଚାରିଲି, "ଦେଖିଦେଇଯିବେ ?"

ସେ ହସି ହସି ଉତ୍ତର ଦେଲେ, "ମୋ ଦେଖିବାଟା ଆପଣଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି ନା ? ଆପଣ ତିନା ଆଖିରେ ଦେଖନ୍ତୁ । ମୁଁ ମୋ ହାତରେ ଅଣ୍ଡାଳି ଅଣ୍ଡାଳି ସବୁ ଦେଖିନେଇ ପାରିବ ।"

କ୍ଷଣେ ରହି ଦୀର୍ଘନିଃଶ୍ୱାସ ପକେଇ କହିଲେ, "ସବୁ ତ ଏଠି ଉଜୁଡ଼ିଗଲା । ଯାହା ରହିଛି, ସେଥିରେ ଯାହା ବା ମୋର ଅଛି, ତାକୁ ଟିକେ ହାତ ବୁଲେଇ ଆଣିଲେ ଆତ୍ମା ମୋର ଶାନ୍ତିପାଏ······ଯାଆନ୍ତୁ, ଚନ୍ଦ୍ରଭାଗାରେ ସୂର୍ଯ୍ୟୋଦୟ ଦେଖି ଚାଲିଯିବେ···ଝିଅକୁ ମୋର ଆଶୀର୍ବାଦ ଜଣେଇ ଦେଇ କହିବେ, ଅନ୍ଧ ମଉସାଙ୍କୁ ସେ ଯେମିତି ମନେ ରଖିଥିବ ।"

ବାଡ଼ି ଠକ୍ ଠକ୍ କରି ସେ ଚାଲିବାକୁ ଲାଗିଲେ ମନ୍ଦିର ଆଡ଼କୁ । ମୁଁ ତାଙ୍କୁ ବହୁତବେଳଯାଏ ଚାହିଁ ରହିଥିଲି ।

ତାଙ୍କ ସହିତ ସେଇଟା ମୋର ଶେଷ ଦେଖା । ତାପରେ ସେ କୁଆଡ଼େ ହଜିଗଲେ ମୁଁ ଜାଣିନ । ପୁରୀ ମନ୍ଦିରରେ ଆଖିବୁଜି ବସି ଜଗନ୍ନାଥଙ୍କୁ ଯେତେଥର ଦେଖିବାକୁ ଚେଷ୍ଟା କରିଛି ଧ୍ୟାନରେ, ତାଙ୍କ ମୁହଁଟି ମୋ ଆଖିରେ ଏବେ ବି ସେତେଥର ନାଚି ଉଠିଛି ।

ମହାପ୍ରଭୁ ସ୍ୱା' ଭିତରେ ଦଶଥର ଗୁଣ୍ଡିଚା ମନ୍ଦିରକୁ ଯାଇ ତାଙ୍କ ଘୋଷଯାତ୍ରା କରି ସାରିଲେଣି । ତେଣୁ ଆଜି ଏ କଥା ସବୁରି ଆଗରେ କାଢ଼ି ଥୋଇଦେଲି ।

କାରଣ, ଏ କଥା ଅନ୍ତତଃ ଆଠଦଶ ବର୍ଷ ଯାଏ ଲୋକେ ଯେପରି ନ ଜାଣନ୍ତୁ, ସେଥିପାଇଁ ସେ ମତେ ଅନୁରୋଧ କରିଥିଲେ । ତା'ର କାରଣ ଏବେ ବୁଝୁଛି, ଆଠବର୍ଷ ଭିତରେ ସେ ମରିହଜିଗଲେ । ତେଣୁ ଲୋକେ ଜାଣିଲାବେଳକୁ ସେ ସଂସାରରେ ନ ଥିବେ ।

ମାତ୍ର ଏବେ ବି ତାଙ୍କ ଆତ୍ମାର ନିର୍ବାଣଗତି ନିମିତ୍ତ ମହାପ୍ରଭୁଙ୍କୁ ମୋର ପ୍ରାଣର ପ୍ରାର୍ଥନା ସବୁଦିନ ଜଣାଏ ତାଙ୍କରି ମନ୍ଦିରରେ ।



# ରାଇ ଆଖ୍ୟାୟିକା



ବୃନ୍ଦାବନର ରାଧା ଆଉ ପୁରୁଷୋତ୍ତମଧାମର ଲକ୍ଷ୍ମୀ କ'ଣ ଏକ ଓ ଅଭିନ୍ନ ? ବୃନ୍ଦାବନରେ ପ୍ରତିଷ୍ଠିତ ଦାରୁମୂର୍ତ୍ତି କ'ଣ ଏଇ ପୁରୁଷୋତ୍ତମ ଧାମର ? ରାଇର ଅପୂର୍ବ ଲୀଳା ଏବେବି ବୃନ୍ଦାବନର ସେବାକୁଞ୍ଜରେ ଦେଖିବାକୁ ମିଳେ। ବୃନ୍ଦାବନ ଓ ପୁରୁଷୋତ୍ତମ ଧାମର ସେତୁବନ୍ଧ ହେଉଛି ରାଇ।

ସାଇଁ ସାଇଁ ନଶାଗର୍ଜନ ଭିତରେ ପୁରୁଷୋତ୍ତମଧାମ ଶୋଇଥାଏ । ବଡ଼ଦାଣ୍ଡଠାରୁ ଆରମ୍ଭ କରି ସବୁ ରାସ୍ତା ମଲାହାପ ଭଳି ପଡ଼ିଥାନ୍ତି । କେହି କୁଆଡ଼େ ଦେଖାଯାଉନାହାନ୍ତି । ଉପର ଆକାଶରେ ଗଣି ନ ହେଉଥିବା ମିଟିମିଟି କେତେଗୁଡ଼ାଏ ତାରାଛଡ଼ା ଆଉ କେହି ଯେମିତି ଖଣ୍ଡମଣ୍ଡଳରେ ଜାଗ୍ରତ ଅବସ୍ଥାରେ ନାହାନ୍ତି । ଲକ୍ଷ୍ମଣ ସୁଆଁସିଆ ସନ୍ତର୍ପଣରେ ବଡ଼ଦେଉଳ ଆଗରେ ଠିଆ ହୋଇ ହାତ ଯୋଡ଼ିଲା । ମନେ ମନେ କାକୁତିବିନତି ଜଣାଇଲା, "ମହାପ୍ରଭୁ ! ମତେ ଏଥିରୁ ରକ୍ଷାକର, ମୁଁ ଆଉ ପାରୁନି···ମୁଁ ଆଉ ପାରୁନି ପ୍ରଭୁ ।"

ତା'ପରେ ମାର୍କଣ୍ଡ ଉପରେ ଥିବା ତା' ଘର ଆଡ଼କୁ ଜୋରରେ ଚାଲିଲା । ଚାରିଆଡ଼କୁ କେମିତି ଛନଛନ ହୋଇ ଚାହିଁ ଚାହିଁ ଯାଉଥାଏ । ଦୁଆରମୁହଁରେ ପହଞ୍ଚି ଦୀର୍ଘନିଃଶ୍ୱାସଟାଏ ପକାଇ ଡରି ଡରି କବାଟରେ ହାତ ଦେଇ ଧୀରେ ଠକ୍ ଠକ୍ କରୁ କରୁ କବାଟ ଖୋଲିଗଲା । ମାଧବୀ ପଚାରିଲା, "ସବୁ ଠିକ ଠିକ କଲ ତ ଯେମିତି ବତେଇଥିଲି ।"

ଲକ୍ଷ୍ମଣ କହିଲା, "ହଁ । ସବୁ କରିଛି ଯେମିତି ବତେଇଥିଲୁ । ତେବେ···"

ମାଧବୀ ପଚାରିଲା, "କ'ଣ କହୁଚ ପୁଣି ?" ଲକ୍ଷ୍ମଣ ବାଆଁରେଇଲା, "ନା କିଛି ନୁହଁ । ଚାଲ ଶୋଇବା ।"

—"ତୁମେ ଖାଇଛ ?"

—"କହିଥିଲୁ ପରା ଚଢ଼େଇନଦା, ବରଗିଠା, ପାରାଚାକ ନେଇ ରାଇକୁ ଖୁଆଇ ଦେଇ ପଣା ପିଆଇ ଦେବାକୁ । ସେ କ'ଣ ମତେ ଛାଡ଼ିଲା ନ ଖୁଆଇ, ତେଣୁ ତା'ର ସାଙ୍ଗରେ ଖାଇଦେଲି ।"

—"ଆଉ କ'ଣ କହିଥାଲା ? ପଣା ପିଇଲା ତ ?"

—"ହଁ, ପଣା ପିଉ ପିଉ ଆଖି ଟିଙ୍ଗୁଡ଼ାକେ ଶୋଇପଡ଼ିଲା । ବେଶୀ ମସଲା ଦେଇ ନ ଥିଲୁ ତ ?"

—"ଏ ନାଇଁମ, ପିଲାଟା ସମ୍ଭାଳି ପାରିବ ନା ? କେମିତି ରାତିଟା ପାହିଯାଉ । ସକାଳୁ ସକାଳୁ ନୋଳିଆ ଦରିଆକୁ ଡଙ୍ଗା ମେଲିଲାବେଳେ ତାକୁ ଦେଖିବେ—ତା'ପରେ···ଓହୋ, ରକ୍ଷା ମିଳିବ ।" ମାଧବୀ ଏତକ କହିଦେଲା ଏକ ନିଃଶ୍ୱାସରେ ।

ଲକ୍ଷ୍ମଣ ମାଧବୀ ବିଛଣା ଧରିଲେ ସିନା', କାହାରିକୁ ନିଦ ହେଲାନି କେତେବେଳଯାଏ । ଦୁହିଁଙ୍କୁ ଟିକିଏ ଛାଇନିଦ ଲାଗିଛି କି ନା ହଠାତ୍ ଏକ ସାଙ୍ଗରେ ଦୁହେଁ ଉଠିପଡ଼ିଲେ । ମିଞ୍ଜି ମିଞ୍ଜି ଡିବିରି ଆଲୁଅରେ ମାଧବୀ ଡରି ଡରି ଲକ୍ଷ୍ମଣ ମୁହଁକୁ ଚାହିଁ କହିଲା, "···ଶୁଣୁଚ, ଡର ଲାଗୁଛି ।"

—"କାହିଁକି ?"

—"ସପନ ଦେଖିଲି । ···ରାଇ ମତେ କହୁଚ, 'ମାଉସୀ, ବାଲିଆଡ଼ିଶ୍ରୋରେ ଶୋଇପଡ଼ିଲି । ଉଠି ଦେଖିଲାବେଳକୁ ପଣ୍ଡାମଉସା ପାଖରେ ନାହାନ୍ତି । ଭାବିଲି; ତୁମେ ଦୁହେଁ ମୋ ପାଇଁ କେତେ ବ୍ୟସ୍ତ ହେଉଥିବ । ତେଣୁ ଚାଲି ଆସିଲି, କବାଟ ଖୋଲ ମୁଁ ବାହାରେ ଠିଆ ହୋଇଛି । ରାତି ପାହିଆସିଲାଣି, କୁଆଁ ତାରା ମଉଳି ଆସିଲାଣି । ଚାଲ, ମାର୍କଣ୍ଡକୁ ଗାଧୋଇ ଯିବା···।"

ଲକ୍ଷ୍ମଣ କହିଲା ଭୟବୋଳା ସ୍ୱରରେ, "ମୁଁ ବି ଠିକ୍ ସେଇଆ ସପନ ଦେଖିଲି । ଦରୋଟି ଝିଅଟିରେ ମତେ ବି କହୁଚ, "ମଉସା ! ମୁଁ ଚାଲି ଆସିଲି, ଦୁଆର ଖୋଲ···"

ମାଧବୀ ଆଉ ଲକ୍ଷ୍ମଣ ଯନ୍ତ୍ରଚାଳିତ ପରି ଦାଣ୍ଡଦୁଆର କବାଟ ଖୋଲି ଚମକି ପଡ଼ିଲେ । ରାଇ ହସି ହସି ମାଧବୀକୁ କହୁଚ, "···ରାତି ପାହିଲାଣି, କୁଆଁ ତାରା ମଉଳି ଆସିଲାଣି । ଚାଲ, ମାର୍କଣ୍ଡକୁ ଗାଧୋଇ ଯିବା···।"

ମାଧବୀ ଆଉ କୋଠ ସୁଆଁ ସିଆ ଲକ୍ଷ୍ମଣ ପରସ୍ପର ମୁହଁକୁ ବଲବଲ କରି ଚାହିଁଲେ । ଷଷ୍ଠ ଘର ଭିତରକୁ ପଶିଲା ।

ଶାଧୋଇସାରି ଷଷ୍ଠ ଆସି ଦାଅଁଙ୍କ ଘର କବାଟ ସମ୍ଭୁଦନ ପରି କଲା ଦେଇ । ଲକ୍ଷ୍ମଣକୁ ମାଧବୀ ଚୁପ୍ ଚୁପ୍ ଡାକିନେଲା ଦାଣ୍ଡଘରକୁ । କହିଲା, "ଏଥର କ'ଣ କରିବା, ସେ ତ ଆମକୁ ଛାଡ଼ିବନି । ତୁମେ ସବୁକଥା ମଣିମାଙ୍କୁ ଜଣେଇବ କି ଦେଉଳକରଣ ମାର୍ଫତରେ ? ଦାନ୍ଦଁ ଦନ କଥା ବଢ଼ି ବଢ଼ି ଯାଉଛି । ନେଡ଼ିଗୁଡ଼ି କହୁଣୀକୁ ବୋହିଗଲେ ଆଉ ପାରିବାନି । କ'ଣ କହୁଚ ?"

ଲକ୍ଷ୍ମଣ କହିଲା, "ମୋ ମୁଣ୍ଡରେ ଆଉ କିଛି ପଶୁନି । ସେବକ ଭିତରେ କୋଠସୁଆଁ ସିଆ ସେବା । ସେବାରେ ତ୍ରୁଟି କଲେ ରଜାଘର କୋରଡ଼ା । ମ୍ୟାନେଜର ଡକରା ପାଇ ନଅର ଘୋଡ଼ଡ଼ାରେ ଟଣା ହେବା ଯାହା, ଯମପୁର ଦେଖିବା ସେଯା । ଦେଖାଯାଉ, ଆଜି ରାତିଟା ଯାଉ । ଯଦି ରାତିରେ ସେମିତି ହେବ, ତେବେ ଯାହା ବିଚାର କରିବା ସକାଳୁ କରିବା । ଟିକେ ଧୈର୍ଯ୍ୟଧର । କି ଲୀଳାରେ ମତେ କାଳିଆ ପକେଇଲା । ମାପେ ହେଲା ଘାଣ୍ଟି ହେଉଛେ ଆମେ ଦି'ଜଣ...।"

ସେଦିନ ରାତିରେ ଷଷ୍ଠ ଆଉ ଲକ୍ଷ୍ମଣ ସୁଆଁ ସିଆ ଘରେ ପହଞ୍ଚିଲା ମାତ୍ରେ ଘରସାରା ମହକ ଉଠିଲା । ଷଷ୍ଠ ଗୋଟାଏ କେମିତି ଅଲଗା ଅଲଗା ଦିଶୁଥାଏ । ସବୁଦିନ ପରି ଷଷ୍ଠ ଆସୁ ଆସୁ ବନ୍ଧଣା ଧରିଲା । ଉଲଖଣ୍ଡା କଣଘରକୁ ଲକ୍ଷ୍ମଣକୁ ଡାକିନେଇ ମାଧବୀ ପଚାରିଲା, "କ'ଣ ହେଲା, ଠିକ୍ ସେମିତି..." ଲକ୍ଷ୍ମଣ ଡରି ଡରି କହିଲା, "ନା, ଆଜି ତ ପୂରା ଅଲଗା । ମୋ ତୁମ ଟାଙ୍କର ଉଠୁଛି, ସେକଥା ମନେପକେଇଲା ବେଳକୁ । ମତେ ଟିକେ ପାଣି ଦେ । ମୁଁ ଟିକେ ହାଲିଆ ମାରେ । ଓଃ..."

ଥକ୍କାହୋଇ ବସିପଡ଼ି ସେ ଢାଳେ ପାଣି ଢକଢକ ପିଇଗଲା । ତା'ପରେ ଟିକେ ଥକ୍କାମାରି କହିଲା, "ଆଜି କଥା ଆହୁରି ଅଦ୍ଭୁତ ।"

—"କ'ଣ ହେଲା, ସେଇ ଉତ୍ତରଦ୍ୱାର ଅଳଆଗଦା ଉପରେ ଦେଇ ମେଘନାଦ ପାଚେରୀ ଚଢ଼ି ଦେଉଳ ଭିତରକୁ ପଶିଲା ?"

—"ନା"

—"ଆଉ କ'ଣ ସେଇ ଦକ୍ଷିଣପଟ ବଗିଚାକଣ ବଳାଯିବା ବାଟ ଦେଇ ଷଷ୍ଠ ଆଉ ତୁମେ..."

ତାକୁ କହିବାକୁ ନ ଦେଇ ଡାହାଣ ହାତ ମାଧବୀ ପାଟିପାଖୁ ଉଠାଇ ଲକ୍ଷ୍ମଣ କହିଲା, "...ଶୁଣ, ଆଜି ଆଉ କୋଉବାଟେ ପାଚେରୀ ଡେଇଁଲୁ । ମତେ ସିଧା କହିଲା ଉତ୍ତରଦ୍ୱାରପାଖୁ ଯିବାକୁ । ଦ୍ୱାର ପାଖରେ ପହଞ୍ଚି ସେ ମତେ

ଯଛରେ ରହିବାକୁ ଠାଣିଦେଲା । ଗୃହଆଡ଼କୁ ଥରେ ନଜର ପକେଇ ଦେଖିଦେଲା କେହି କୁଆଡ଼େ ନାହାନ୍ତି । ତା'ପରେ ଦୁଆର କବାଟରେ ହାତ ଦେଇ ଦେଇ ଦୁଆର ମେଲିଗଲା ।"

ଭୟରେ ଚିତ୍କାର କରିଉଠିଲା ମାଧବୀ, "ଏଁ...ମନକୁ ଖୋଲିଗଲା । ଏ ମା', ମୁଁ କ'ଣ କରିବି । ଏ କାଳସୀ, ନା ପିଶାଚୀ, ନା... ।"

"ଶୁଣ, ଧୈର୍ଯ୍ୟଧର ଖାଲି ମନକୁ ଖୋଲିଗଲାନି, ମନକୁ ବି ବନ୍ଦ ହୋଇଗଲା ଆମେ ପଶୁ ପଶୁ । ଚମିଣିଆ ଗୁଡ଼ାକ ଦୁଆର ଖୋଲିବା କ୍ଷଣି ଶଁ ଶଁ ହୋଇଉଠିଲେ । ଘଇ ମତେ ବାଟ କଢ଼େଇ ନେଲା କୋଇଲିବୈକୁଣ୍ଠ ଆଡ଼କୁ ।"

—"ତା'ପରେ ?"

—"ଠିକ୍ ଉତ୍ତରଦ୍ୱାର ଭଳି କୋଇଲିବୈକୁଣ୍ଠର ବାହାର ଦ୍ୱାର ଆଉ ଭିତର ଦ୍ୱାରରେ ଘଇ ହାତ ଦେଇ ଦେଇ ଖୋଲିଗଲା । ଆମେ ପଶୁପଶୁ ପୁଣି ପଡ଼ିଗଲା ।"

—"ହେ ମା' ବିମଳା, ସେ୍ତ ନଷ୍ଟେ କ'ଣ ଭୋଜବିଦ୍ୟା ଜାଣିଛି । କ'ଣ କରିବା...ଟିକେ ବଡ଼ପଣ୍ଡା କାନକୁ ଏକଥା ନଅ ଭଳି ତୁମକୁ ନେହୁରା ହେଉଛି ।"

ଲକ୍ଷ୍ମଣ ସୁଅଁସିଆ ଏଥର ଟିକେ ତାଗିଦ କରି କହିଲା, "ଚୁପ୍‌କର । ସବୁ ଶୁଣିଯା । ...ଆମେ ସବୁଦିନ ପରି କୋଇଲିବୈକୁଣ୍ଠ ଭିତରେ ପହଞ୍ଚିଲୁ ..."

—"ତା'ପରେ ?"

—"ସେ ଦଉଡ଼ିଗଲା ସମାଧିଜାଗାକୁ । ଏତିକି ଟିକେ ମେଞ୍ଚିଡ଼ ଘଇ ସମାଧିରେ ଗୋଡ଼ ଦେଇ ଦେଇ ଷୋଡ଼ଶୀ କନ୍ୟା ହୋଇଗଲା ।"

– "ଏ ମା', ମୁଁ କ'ଣ କରିବି ଲୋ । ତୁମର ହୋସ୍ ଥିଲା ତ ଏସବୁ ଦେଖିଲାବେଳେ ?"

—"ମୁଁ ବି ପ୍ରଥମେ ସେଇ ଦୋଯନ୍ଧରେ ପଡ଼ିଲି । ନଜକୁ ନଜେ ବିଶ୍ୱାସ କରିପାରିଲିନି । ଆଖିମଳି ଦେଖିଲି ଘଇ ଷୋଡ଼ଶୀ ହୋଇଯାଇଛି । ସମାଧି ମାଟିରେ ହାତ ଦେଇ ଦେଇ କୋଇଲିବୈକୁଣ୍ଠ କମ୍ପିଉଠିଲା ।"

—"କ'ଣ ହେଲା ?"

—"ସମାଧି ଉପର ପିଆଲୀଲଟା ଉପରେ ଲଟେଇ ଥିବା ମାଳତୀଲଟା ଗୃହଁ ଗୃହଁ ମାଳତୀ ଫୁଲରେ ନଇଁ ପଡ଼ିଲା, ଗୃହଅଡ଼ ମହକିଉଠିଲା । ମୟୂର ହ'ଟା କୁଆଡ଼ୁ ଥିଲେ ନାଚ ନାଚ ପହଞ୍ଚିଗଲେ । ଏଇ, ଏଇ ଯୋଉ ମାଳତୀ ଫୁଲର ବାସନା ଆମ ଘରେ ଏବେ ପାଉଛୁ, ସେଇ ବାସନାରେ ଖଣ୍ଡମଣ୍ଡଳ ଭରିଗଲା ।

ବୈକୁଣ୍ଠରେ ସୁନ୍ଦର ବୀଣା କିଏ ବଜାଇବା ଆରମ୍ଭ କରିଦେଲା । ମତେ ଲାଗିଲା ଯେମିତି ଦଳେ ବୀଣାକାର ସେବକ ବୀଣାଧରି ସେଠି ପହଞ୍ଚିଗଲେ । ତା'ପରେ···”

—“ରହିଗଲ ଯେ··· ।”

—“ଗୀତ ନଇଁପଡ଼ି ସମାଧିକାଗାକୁ ଛୁଇଁ ଦେଇଛୁ କି ନା ଗୃହଆଡ଼ ଆଲୁଅ ହୋଇଗଲା । ଆଲୁଅର ତେଜ ଏତେ ଜୋରଥିଲା ଯେ ମୋ ଦୁ' ଆଖି ବୁଜି ହୋଇଗଲା । ବହୁ କଷ୍ଟରେ ଆଖି ଖୋଲି ଦେଖିଲି, “ସମାଧି ଭିତରୁ ଜଣକ ପରେ ଜଣେ ଶହ ଶହ ଜଗନ୍ନାଥ ଉଠିପଡ଼ୁଛନ୍ତି ।”

—“ଜଗନ୍ନାଥ !”

—“ହଁ, ମତେ ଲାଗୁଥାଏ ଯେମିତି କୋଉଯୁଗରୁ ସମାଧି ନେଇଥିବା ଶହ ଶହ ଦାରୁ-ଜଗନ୍ନାଥ ଜୀବନ ପାଇ ଉଠିପଡ଼ୁଛନ୍ତି । ଆଖିପିଛୁଡ଼ାକେ ସବୁ ଜଗନ୍ନାଥ ପୁଣି କଳାକାହ୍ନୁ ହୋଇଗଲେ । ତାଙ୍କ ମୁଣ୍ଡରେ ମୟୂର ଚୂଳ, ହାତରେ ବଂଶୀ ଆଉ ଗୀତ······

—“ଗୀତର କ'ଣ ହେଲା ?”

“ଠିକ୍ ଯେତକ କାହ୍ନା ସେତକ ଗୀତ କୋଇଲିବୈକୁଣ୍ଠରେ ଠୁଳ ହୋଇ-ଗଲେ । ଗୀତ ଭିତରୁ ଗୋଟିକ ପରେ ଗୋଟିଏ ଗୀତ ବାହାରିପଡ଼ି ଗୋଟିକ ପରେ ଗୋଟିଏ କାହ୍ନା ଉପରେ ଢଳିପଡ଼ୁଥା'ନ୍ତି । ଓଃ, ସାରା କୋଇଲିବୈକୁଣ୍ଠ ଯେମିତି ନିଧୁବନ ହୋଇଗଲା । ଗୋଟି ଗୋଟିକରି ସବୁ ଗଛ କୁଞ୍ଜ ହୋଇଗଲେ । ମୁଁ ମୂର୍ଚ୍ଛା ହୋଇପଡ଼ିଲି ।”

—“ତା'ପରେ ?”

—“କିଛି ଜାଣିନି, କେତେବେଳ ପରେ ଗୀତ ମୋ ଦେହରେ ହାତ ମାରିବାରୁ ମୁଁ ଉଠିଲି । ମତେ ଦେଖି ହସି ହସି କହିଲା, ‘ଚାଲ ଯିବା ଘରକୁ, ବହୁତ ବେଳ ହେଲାଣି । ରାତି ପାହିବା ଆଗରୁ କେମିତି ଘରେ ପହଞ୍ଚିଯିବା ।' ଯିବାବେଳ ପରି ଫେରିଆସିଲା ବେଳେ ବି କୋଇଲିବୈକୁଣ୍ଠର ଦୁ' ଦୁଆର ଓ ଉତ୍ତରଦ୍ୱାର ସେମିତି ଖୋଲିଲି ଓ ବନ୍ଦ ହୋଇଗଲା ।”

—“ବାଟରେ ଗୀତ କ'ଣ କହିଲା ?”

—“ନା, କିଛିନାହିଁ । କିନ୍ତୁ ମୁଁ ସାହସ କରି ପଚାରିଲି, ଏ ସବୁ କ'ଣ ଗୀତ··· ।”

—“କ'ଣ ଉତ୍ତର ଦେଲା ?”

—“କିଛି ନାହିଁ । ସବୁଦିନେ ଯାହା କହେ, ସେଇଆ । ମତେ ପଚାରିଲା, ତୁମେ କ'ଣ କୋଇଲିବୈକୁଣ୍ଠକୁ କେବେ ଆସନା ? ମୁଁ କହିଲି, ‘ମାଲିକାଠ ସୁଆରସାଇରୁ ନେବାକୁ ଆସିଲେ ଏଇ ସମାଧିକାଗାରେ ମୁଣ୍ଡିଆ ମାରେ ।”

ମୋ କଥା ଶୁଣି ସେ କହିଲ, 'ଆଉ ସେଇ ମୁଣ୍ଡିଆ ମାରିଲାବେଳେ କ'ଣ କୁହ ।
ମତେ ବଲବଲ କରି ଚାହିଁବାର ଦେଖି ରାଇ ମନେପକେଇ ଦେଲ, 'ସବୁଥର
କହନା, ପ୍ରଭୁ କେବେ ଦୟାକରି ଟିକେ ଦର୍ଶନଦେଇ ଆଖି ପବିତ୍ର କରିବ ।
ମୁଁ ତା' କଥାରେ 'ହଁ' କହିବାରୁ ସେ କହିଲା, 'ପ୍ରଭୁ ଯେବେ ଦୟାକଲେ ତୁମେ
ଏମିତ ବିଚଳିତ ହୋଇପଡ଼ୁଛ କାହିଁକି ?"

ଲକ୍ଷ୍ମଣ ଆଉ କିଛି କହି ପାରିଲାନି । ମାଧବୀ କେବଳ ଏତିକି କହିଲା,
"ତେବେ କ'ଣ ଆଜି ମ୍ୟାନେଜର କି ଦେଉଳକରଣଙ୍କ ହାତରେ ମଣିମାଙ୍କୁ
ଜଣେଇବ ନା ନାହିଁ ?"

—"ନା, ରାଇ ମନା କରିଛି । କହୁଛି, ଅପେକ୍ଷା କରିବା । କାହା କାନକୁ
ଏ କଥା ନ ନେବାକୁ । ଆମକୁ କୁଆଡ଼େ ବୃନ୍ଦାବନ ଯିବାକୁ ହେବ । ସେଇଠି,
ସେଇ ଜାଗାରେ···

—"କ'ଣ ହେବ ।"

—"କହିଲା, 'ସବୁ ଜାଣିପାରିବ । ତା' ଆଗରୁ କାହା କାନରେ ଯେମିତ
ଏ କଥା ନ ପଡ଼େ । ତେବେ ତୋ କଥା କହୁଥିବାରୁ କହିଲି, "ହଁ ମାଉସୀଙ୍କୁ
କହିଦିଅ ପଛେ, ହେଲେ ମତେ ମୁଣ୍ଡଛୁଆଁଇ ନିୟମ କରି ଦେଇଛି ଗୁରୁକାନରୁ
ଏ କଥା ଯେମିତ ଛଅ କାନ ନ ହୁଏ ।"

ମାଧବୀ ହାତ ଯୋଡ଼ିଲା ବଡ଼ ଦେଉଳ ଉଦ୍ଦେଶ୍ୟରେ ।

ଦୁ'ପହର ସରିକି ରାଇ ଉଠିଲି । ଲକ୍ଷ୍ମଣ ସୁଆଁ ପ୍ରିଆ ପଚାରିଲା, "···ଆଜି
ଦେଉଳକୁ ଏଇନେ ଯିବୁକି ମା' ? ମନ୍ଦିରରେ ପାହାଡ଼ଉଠା ମହାସ୍ନାନ ହୋଇଛି ।
ଭୋଗ ପୋଡା ହେବ । ମୋର ପାଳି । ମୁଁ ଏଇଲେ ଯିବି । ତୁ ଯିବୁ ମୋ
ସାଙ୍ଗରେ ?"

କେମିତ ଗୋଟାଏ ମିଠାଳିଆ ହସ ହସି ରାଇ କହିଲା, "ଏବେ !
ଦିନବେଳେ ! ରାଇର ଦିନରେ କ'ଣ କାମ ମନ୍ଦିରରେ ?"

ପୁଣି ଟିକଏ ରହି ଆଖି ନଚେଇ କହିଲା, "ରାତିରେ···ସେଇ ରାତିରେ···
କୋଇଲବୈକୁଣ୍ଠ ଯିବା···ଏଁ ।"

ଗୁଣିଆ ମନ୍ତ୍ର ପଢ଼ି ଗୁଣି କଲା ଭଲ ଲକ୍ଷ୍ମଣ ମୁଣ୍ଡ ଝୁଙ୍ଗାରିଲା ଘାଇ କଥାରେ । ତାକୁ ଘରୁ ବାହାରିବାର ଦେଖି ଘାଇ କହିଲା, "ଯଦି ସୁବିଧା ହୁଏ, ତେବେ କୋଇଲାବୈକୁଣ୍ଠ ସମାଧିରୁ ମୁଠାଏ ମାଟି କାନରେ ବାନ୍ଧି ଆଣିବ ମଉସା ।"

କାନରେ ଗଣ୍ଠି ପକେଇ ଯେ ମାଟି ବାନ୍ଧିଲାବେଳକୁ ଜଗିଥିବା ପୁଅଁସିଆ ମେନେକ ଖାଇ କହିଲା, "କ'ଣ ବୁଜୁଳା ବାନ୍ଧିଲୁଣି ସମାଧି ମାଟିରେ ? ଭରି ଯାଗୀ ପଡ଼ୁଛନ୍ତି କରେ ? ଜଣାପଡ଼ୁଛି, ଭଲ ଦି' ପଇସା ଆଜି କମେଇବୁ । ସଞ୍ଜକୁ ଭାଙ୍ଗ ଟେ ଦେବୁନାରେ ଲଇଖଣିଆ ?"

ତାକୁ କଛି ଉତ୍ତର ନ ଦେଇ ଲକ୍ଷ୍ମଣ ପୁଅଁସିଆ ଘରେ ନ ପହଞ୍ଚୁଣୁ ଦଣ୍ଡିଦୂଆରୁ ତା' କାନ୍ଧରୁ ବୁଜୁଳିଟାକୁ ହସି ହସି ଝାମ୍ପି ନେଇ ଘାଇ ସମାଧି ମାଟି ବାଣ୍ଟି ଦେଇଗଲା ସବୁ ଘରେ । ରୋଷ ଘର, ଭଣ୍ଡାର ଘର, ଗୁହାଳ, ତଳ ଖମ୍ବା କଛି ବାଦ ପଡ଼ିଲାନି । ମାଟିଗୁଡ଼ାକୁ ଘର ସାରା ବାଣ୍ଟୁ ବାଣ୍ଟୁ କ'ଣ ଗୁଡ଼ାଏ ବକବକେଇ କହି ଦେଉଥାଏ ।

ଲକ୍ଷ୍ମଣ ମଝି ଖମ୍ବା ପିଣ୍ଡାରେ ବସି ପଡ଼ୁ ପଡ଼ୁ ମାଧବୀ କହିଲା, "ଆଜି ଜାଣିଛ, ମୁଠାଏ ବି ଗୁଡ଼ଳ ନାହିଁ ଘରେ, ତୁମ ସାଙ୍ଗରେ ଗୃହଦନ ହେଲା ଲଗେଇଛୁ । ପୁଅଁସିଆ ମୀନଦାଦା ଖବର ଦେଇଛୁ, ତା'ର ଉଧାର ଗୁଡ଼ଳ ଶୁଝିବାକୁ । କାଣି କଉଡ଼ିଟାଏ ବି ନାହିଁ, ବଡ଼ଦାଣ୍ଡରୁ ଯାଇ ଦାମ ମହାଜନ ଦୋକାନରୁ କୁଞ୍ଚାଏ ଗୁଡ଼ଳ ଆଣିବାକୁ । ମହାଜନ ମନା କରୁଛି, ଆଉ ବାକି ଦେବନି । ଗୁଡ଼ଳ ତ ଗୁଡ଼ଳ, ଜାଇ ଗଣ୍ଡାଏ ବି ନାହିଁ । ଟିକିଏ ନ ଯାଉଣୁ ଘାଇ ମାଗିବ ଖାଇବାକୁ । କ'ଣ ଖେଇ ମିଳିଲା ସେବାରୁ ?"

ମୁହଁରେ ଦୁଃଖଲେପ ବୋଳି ଲକ୍ଷ୍ମଣ ଉତ୍ତର ଦେଲା, "ଖେଇ ଜବତ କରିଛନ୍ତି ମେନେଜର । ସବୁ ପୁଅଁସିଆଙ୍କ ଖେଇ ମାସେ ବନ୍ଦ ରହିବ । ବିଗ୍ଭର ପରେ ଯାହା ହେବ । ଯାଏ, ଦାଣ୍ଡକୁ ଦେଖେ ।"

ଘାଇ ହଠାତ୍ କହିଲା, "କାଇଁକିମ ଦାଣ୍ଡକୁ ଯାଉଛ ପଣ୍ଡାମଉସା ? ସେ କଣଘର ପିଢ଼ା ଉପରେ ଯେଉଁ ଘୁମ୍ମ ଦି'ଟା ଅଛି, ସମାଧି ମାଟି ପକେଇଲା ବେଳେ ଦେଖିଲି ଗୋଟାଏ ଘୁମ୍ମରେ ସବୁ ଗୁଡ଼ଳ ଆଉ ଗୋଟାଏ ଘୁମ୍ମରେ ମୁଗ ବୋଝେଇ ହେଇଛି । ନାହିଁ କ'ଣ କହୁଛ ମ ମାଉସୀ ? ପଣ୍ଡା ମଉସାଙ୍କୁ ଏ ଖରାରେ ଦାଣ୍ଡକୁ କାହିଁକି ପଠଉଚ ?"

କଥାରେ ଅବିଶ୍ୱାସ କରି ମାଧବୀ ଦଉଡ଼ିଗଲା ଜଳଖଣ୍ଡା କଣ ଆଡ଼କୁ ; ଏ କ'ଣ ? ଘଞ୍ଚରେ ଗୋଟାଏ ଗୁମ୍ଫରେ ଘରୁ ବାସୁମତୀ ଗୁଡ଼ଲା ଓ ଆଉ ଗୋଟାଳରେ ସୁନାରଙ୍ଗୀ ମୃଗ । ଦେଖିଯାଇ ଦଉଡ଼ି ଆସିଲା ଅଗଣାକୁ । ଗୃହିଲା, ରାଇ ହସୁଛି ଖିଲ୍ ଖିଲ୍ ହୋଇ । ଲକ୍ଷ୍ମଣ ସୁଆଁ ସ୍ରିଆ ମାଧବୀ ପାଖରୁ ସବୁ ଶୁଣି ରାଇକୁ ପଚାରିଲା । "..... ସତ କହ ମା ତୁ କିଏ ?" ରାଇ ହସିଲା । ହସି ହସି ଗଡ଼ିଗଲା । ମାଧବୀ ସ୍ୱାମୀକୁ କହିଲା, "ଯା' କ୍ଷଣେ ଗୁଡ଼ି ମାର୍କଣ୍ଡରେ ଗାଧୋଇପଡ଼ି ଆସ । ଯାଉଛି ଭାତ ବସେଇବି ।"

ସେଇଦିନ ରାତିରେ ରାଇ ଲଗେଇଲା ବୃନ୍ଦାବନ ଯିବାକୁ । ମାଧବୀ କହିଲା, "ବୃନ୍ଦାବନ ! କାହିଁ କେତେ ଦୂର ?"

ଲକ୍ଷ୍ମଣ ମୁଣ୍ଡରେ ହାତ ଦେଲା, "ଏସନ ଯାତ୍ରୀ ବ୍ୟବସାୟ ଶୂନ । ବାଟ ଖରଚ ପଇସାଟିଏ ନାହିଁ । ଚୁଡ଼ା ଗୁଡ଼ଲା ଯୋଗାଡ଼ିବାକୁ ହେବ ।"

ରାଇ କହିଲା, "ସେମିତି କୁହନ୍ତି ପଣ୍ଡା ମଉସା । ପୁରୀ ଭଳିଆ ବୃନ୍ଦାବନ ଯାଇ ହେବନି ରାଧାରାଣୀ କୃପା ନ କଲେ । ତୁମେ 'ରାଧାରାଣୀ' ନାଁ ପାଟିଛଡ଼ା କରନା । ବୃନ୍ଦାବନ ଆଖି ପିଛୁଳାରେ ଯାଇ ହେବ । ହଁ, ଆଜି ଶୀଘ୍ର ଯାଇ ରାତି ପାହାନ୍ତା ଫେରି ଆସିବା କୋଇଲିବୈକୁଣ୍ଠରୁ । ସକାଳୁ ସକାଳୁ ଯଦି ବୃନ୍ଦାବନରେ ପହଞ୍ଚି ହୁଅନ୍ତା....."

ରାଇ ଆଖି ବୁଜି କ'ଣ ଭାବିଲା । ଲକ୍ଷ୍ମଣ ସୁଆଁ ସ୍ରିଆ ଭାବିଲା, ରାତି ପାହିଲେ ଏଥର ମେନେଜରଙ୍କୁ ନ ଜଣେଇଲେ କ'ଣ କେତେବେଳେ ଘଟିବ । ବଡ଼ଦେଉଳ ରାତିରେ ଶୋଧ ହେବା ପରେ ତାହିଁ ଆରଦିନ ପହଡ଼ ଫିଟିଲା ପୂର୍ବରୁ ଭିତରକୁ ମହାପାତ୍ର ନ ପହଞ୍ଚିଣ୍ଣ ସେବା ନ ଥିବା ସେବକ ଦେଉଳରେ ରହିବା ମନା । ସେଥିରେ ପୁଣି ଜୟବିଜୟଦ୍ୱାର ଅଉ କୋଇଲିବୈକୁଣ୍ଠ ଜାଗା । ସନ୍ଧ୍ୟା ପରେ କେହି ପାଦ ଦିଅନ୍ତିନି ସେପଟେ । ଧରାପଡ଼ିଲେ ଜୀବ ନାହିଁ ।

ରାତି ପାହିଲାନି କିନ୍ତୁ ପୁଣି ଲକ୍ଷ୍ମଣ ଓ ମାଧବୀର । ସେଇଦିନ କୋଇଲିବୈକୁଣ୍ଠରୁ ଫେରି ଦୁହିଁଙ୍କୁ ପାଖରେ ବସାଇ ରାଇ କହିଲା, "ରାଧାରାଣୀ ଭାରି ସୁନ୍ଦର । ରାଧାରାଣୀର ପାଦ ନଖଠାରୁ ଆରମ୍ଭ କରି ମୁଣ୍ଡ ଚୁଟି ପର୍ଯ୍ୟନ୍ତ ସବୁଠି

ରୂପ ଶିଖି ହେଉ ଖେଳୁଥାଏ । ଯମୁନାକୂଳରେ ବଂଶୀ କୁହୁଡାନରେ ଧୀର ସମୀରରେ ଯେତେବେଳେ ରାଧାରାଣୀ କୃଷ୍ଣଚନ୍ଦ୍ରଙ୍କ କାନ୍ଧରେ ହାତ ପକେଇ......"

ଅଧାକଥାରେ ଦୁହେଁ ଶୋଇଗଲେ । ସକାଳୁ ଦୁହେଁ ନିଜକୁ ଯେଉଁ କୁଟିଆ ଭିତରେ ଆବିଷ୍କାର କଲେ, ସେଇ କୁଟିଆ ଥିଲା ବୃନ୍ଦାବନରେ ବଂଶୀବଟରେ— ପରିକ୍ରମା ମାର୍ଗରେ । ସବୁ ଦେଖି ସେମାନଙ୍କ ପାଟିରୁ କଥା ବାହାରୁ ନ ଥାଏ । ଏ ସବୁ କ'ଣ ଘଟିଯାଉଛି । ରାଇ କହିଲା, "ଆଜି ସନ୍ଧ୍ୟାରେ ସେବାକୁଞ୍ଜ ଯିବା ପଣ୍ଡାମଉସା । ତୁମେ ଡରିବନି ସେଠି ।" —"ଡରିବାର ସେଠି କ'ଣ ଅଛି ମା ?"

—"ନା'ଁ ଯେ, ସନ୍ଧ୍ୟାରେ ସେଠି କେହି ରହନ୍ତିନି । ଏପରିକି, ମାଙ୍କଡ଼କୁଆ ବି ପୂରୁଷ ଦେବତା ମା'କୋଳକୁ ଡେଇଁପଡ଼ିବା ପୂର୍ବରୁ ସେବାକୁଞ୍ଜ ଛାଡ଼ି ଯାଆନ୍ତି । କୁଆକୋଇଲି ସବୁ ସନ୍ଧ୍ୟା ଆଗରୁ ବାହୁଡ଼ି ଯାଆନ୍ତି । ତା'ପରେ ରାତିରେ..."

—"ରାତିରେ କ'ଣ ହୁଏ...।"

—"ଯାହା ଦେଖିଛ କୋଇଲିବୈକୁଣ୍ଠରେ", ହସି ହସି ଗଡ଼ିଗଲା ରାଇ ।

ଲକ୍ଷ୍ମଣ ସୁଆଁସିଆ ମୁଣ୍ଡରେ ହାତ ଦେଲା, "ହେ ପ୍ରଭୁ ! ରକ୍ଷାକର । ହେ ଜଗନ୍ନାଥ, ଏ କି ଲୀଳା...।"

ସେବାକୁଞ୍ଜ ଅଗଣାଯାକ ଲୋକଙ୍କ ନାଁ, କାହାରି କାହାରି ଛବି ମାର୍ବଲରେ ଅଙ୍କା ହୋଇଛି । ଅମୁକ, ରାତିରେ ରହି ପାଗଳ...ଅମୁକ ରାତିରେ ରହି ଅନ୍ଧ... ଅମୁକ ବୃନ୍ଦାବନ ବିହାରୀ ଲାଲ ପାଦ ତଳେ ଆରପୁରକୁ ଯାତ୍ରା... । ଲକ୍ଷ୍ମଣ ସୁଆଁସିଆ ରହିଲା ରାଇଗହଣରେ, ସେଇ ସେବାକୁଞ୍ଜରେ । ହଜିଗଲା ସେଦିନ ରାତିରେ, ସେଇ ନିଧୁବନରେ ଝଙ୍କାର ଉଠୁଥିବା ନୂପୁର ତାନରେ, ମଧୁର ରାଗିଣୀର ଅପୂର୍ବ ମୂର୍ଚ୍ଛନାରେ । ରାଇ ହୋଇଗଲା ସହସ୍ର ରାଇ । ସହସ୍ର କୃଷ୍ଣଚନ୍ଦ୍ର ଆଖି ପଛୁଳାକେ ଉଭା ହୋଇପଡ଼ିଲେ । ସେବାକୁଞ୍ଜରେ ରସଭରା ରାସଲୀଳାର ଚକ୍ରୀ ଘୂରି ଘୂରି ବୁଲୁଥାଏ । ରାଧା...କୃଷ୍ଣ...ରାଧା...କୃଷ୍ଣ...ରାଇ... କୃଷ୍ଣ...କୃଷ୍ଣ...ରାଇ ।

ସକାଳ ଆଗରୁ ଦୁହେଁ ସେବାକୁଞ୍ଜ ଗୁଡ଼ କୁଟିଆରେ ପହଞ୍ଚିଲେ । ମାଧବୀ ସେତେବେଳକୁ ଚନ୍ଦ୍ରାବଳୀଙ୍କରେ ବୁଡ଼ି ଯାଇଥାଏ । ଭାବ ଯାଉଥାଏ, ସେଇଦିନର କଥା, ଯେଉଁଦିନ ତା' ସ୍ୱାମୀ ଲକ୍ଷ୍ମଣ ସୁଆଁ ସ୍ତ୍ରିଅ ଅଠରନଳା ପାଖରୁ ଆଠବର୍ଷର ରାଇକୁ ଧରି ଆସିଲ ତାଙ୍କ ମାର୍କଣ୍ଡ ଉପର ଘରକୁ । ରାଇ କଥାରୁ ଜଣାପଡ଼ିଲା ସାଙ୍ଗରେ ଆସୁଥିବା ତା'ର ପରିବାର ଜଗନ୍ନାଥ ଦେଉଳରେ ସବୁଦିନ ପାଇଁ ଆଖି ବୁଜି ଦେଇଛନ୍ତି, ସେ ଏକା ରହିଯାଇଛି । ତା'ଛଡ଼ା କେହି ଜଗନ୍ନାଥ ଦର୍ଶନକୁ ରହିଲେନି ! ହଇଜା ସବୁରି କାଳ ହେଲା । ଗୃହ ଗୃହ ଗୋଡ଼ ହାତ ଛୁଣ୍ଡି ଗଲା । ଲକ୍ଷ୍ମଣ ଦେଖିଲା ରାଇର କଅଁଳିଆ ଦୁଧଅଳତା ପାଦରେ ବି କନା ଗୁଡ଼ା ହୋଇଥାଏ ସେଦିନ । ତା' ଗୁଲୁଗୁଲୁ କଥା, ମନଲୋଭା ଗୃହିଣୀ ଆଉ ଢଙ୍ଗଢାଙ୍ଗରେ ସେ ଲୋକଙ୍କୁ କିଣି ନେଉଥାଏ । ସବୁରି ତୁଣ୍ଡରେ ଗୋଟିଏ କଥା, 'ଆହା ବାପମା' ଛେଉଣ୍ଡ ପିଲିଟି !' ବିକଳ ପାଇ ଲକ୍ଷ୍ମଣ ସୁଆଁ ସ୍ତ୍ରିଆ ସେଦିନ ତାକୁ ଘରକୁ ଆଣିଥିଲ । ସେତେବେଳକୁ ବାହାଘରର ସାତବର୍ଷ ପୂରି ଯାଇଥିଲେ ବି ଜଗନ୍ନାଥ କୋଳରେ ବିକଟେ ଦେଇ ନ ଥା'ନ୍ତି । ରାଇ ରହିଲା ତାଙ୍କ ଘରେ । ରହିବାର ଅଠଦିନେ ଆରମ୍ଭ କରିଦେଲା ଲୀଳା ।

—"କ'ଣ ଭାବୁଛ ମାଉସୀ ?"

ମାଧବୀ ଚମକି ପଡ଼ିଲା ରାଇ କଥାରେ । ଲକ୍ଷ୍ମଣ କାନରେ ପଡ଼ିଲା ଯମୁନା ବକ୍ଷରେ ଭାସି ଯାଉଥିବା ନାଆରୁ ବ୍ରଜବାସୀ ନାଉରୀର ରାଧାଲହରୀ ।

ସେ ଆଉ ମାଧବୀ ଭାବୁଥିଲେ ଏ ସବୁ କ'ଣ ହେଉଛି ।

ଦିନକର କଥା । ମାଧବୀ ଲକ୍ଷ୍ମଣ ଜିଦ୍ ଧରିଲେ ପୁରୁଷୋତ୍ତମ ଫେରିବେ । ମାଧବୀ କହିଲା, "ପୁରୁଷୋତ୍ତମ ଯେମିତି ହାତ ଠାରି ଡାକୁଛି । ମହାପ୍ରସାଦ ମନେ ପଡ଼ୁଛି । ଅନ୍ନ, ଡାଲି, ବେସର, ମହୁର, ଶାଗ··· । ଆମେ ପୁଣି ଫେରିଯିବା ପୁରୁଷୋତ୍ତମ ।"

ରାଇ ପୁଣି ହସିଲା । କହିଲା, "ପୁରୁଷୋତ୍ତମ ଯିବା ଜରୁରତ ନେହିଁ । ଜଗନ୍ନାଥଜୀ ଇଧରହି ଆ ଜାୟେଙ୍ଗେ ।"

ଦୁହେଁ କିଛି ବୁଝିପାରିଲେନି । ରାଇ କଥା କିନ୍ତୁ ସତ ହେଲା । ସେ ବରଷ ନବକଳେବର ପଡ଼ିଲା । ରାଜାଙ୍କୁ ସ୍ୱପ୍ନ ହେଲା, "ଚତୁର୍ଦ୍ଧାମୂର୍ତ୍ତି ସମାଧି ପାଇବେନି । ଏମିତି ଯିବେ ବୃନ୍ଦାବନ । ସେଇଠି ପ୍ରତିଷ୍ଠା ହେବେ । ବୃନ୍ଦାବନର ପରିକ୍ରମା ମାର୍ଗରେ ପ୍ରତିଷ୍ଠିତ ମନ୍ଦିରରେ ଶୋଭା ପାଇବେ ଦାରୁବ୍ରହ୍ମ ।"

ସେବର୍ଷ ନବକଳେବର ପରେ ଚତୁର୍ଦ୍ଧା ଦାରୁମୂର୍ତ୍ତି ବୃନ୍ଦାବନ ଚାଲାନ ହେଲେ ।

"ଅଉ ସେଇଦାନୁ ତୁମେ କ'ଣ ଏଇଠି ଅଛ ?" ମୋ ପ୍ରଶ୍ନର ଉତ୍ତରରେ ଲକ୍ଷ୍ମଣ ପୁଆଁ ପିଆ ତା' ଝୋଟରଙ୍ଗର ଦାଢ଼ିକୁ ଆଉଁସି ଆଉଁସି କହିଲା, "ହଁ, ସେଇଦାନୁ ଏଇଠି ପଡ଼ିଛୁ ବୃନ୍ଦାବନର ଏଇ ଜଗନ୍ନାଥ ମନ୍ଦିରରେ ।"

—"ମାଧବୀ ?"

ଲକ୍ଷ୍ମଣ କୋଠ ପୁଆଁ ପିଆ ଉପରକୁ ଡାହାଣ ହାତ ବଢ଼େଇ ଆକାଶକୁ ଦେଖେଇ ଦେଲା । ମୁଁ ପଚାରିଲି, "ରାଇ" । ଲକ୍ଷ୍ମଣ ହସିଲା ।

କିଛି ବୁଝିପାରିଲିନି । ପୁଣି ପଚାରିଲି, "ରାଇ କେଉଁଠି ଅଛି ?" ସେ କହିଲା, "ରାଇ ନଥିଲେ ବଞ୍ଚନ୍ତି କେମିତି ବାବୁ । ସେ ତ ମୋର ପ୍ରାଣ । ତା' ବିନା ମୁହୂର୍ତ୍ତେ ବି ବଞ୍ଚିପାରିବିନି ।"

ଆବେଗରେ କହିଲି, "ମତେ ଟିକେ ଦେଖେଇଦବ ରାଇକୁ ।"

ସେ କହିଲା, "କାହାରିକୁ କିନ୍ତୁ ଦେଖେଇ ପାରିବିନି ବାବୁ । ଆମ ଓଡ଼ିଶାରୁ ଆସିଛ । ତେଣୁ ମନପ୍ରାଣ ଖୋଲି ତୁମ ଆଗରେ ସବୁ ସିନା କହିଦେଲି, ହେଲେ ଦେଖେଇ ପାରିବିନି । କେବଳ ତା' ଇଚ୍ଛା ହେଲେ ସେ ତୁମକୁ ଦେଖାଦେବ ।"

ହଠାତ୍ ପଚାରିଲି, "ରାଇ ବହୁତ ବୁଢ଼ୀ ହୋଇଗଲାଣି ।" ଭାବାବେଗରେ ଆଖି ଲୁହ ପୋଛି ସେ କହିଲା, "ରାଇକୁ ଚିହ୍ନି ପାରିଲନି ବାବୁ ? ରାଇ ବୁଢ଼ୀ ହେଇନି କି କେବେ ବୁଢ଼ୀ ହେବନି । ରାଇ ଆଜି ବି ସେମିତି ଅଠରବର୍ଷର ହୋଇ ରହିଛି ।"

ମୁଁ ମନ୍ତ୍ରମୁଗ୍ଧ ହୋଇ ସବୁ ଶୁଣୁଥିଲି । ଲକ୍ଷ୍ମଣ କହିଲା, "ଥରେ ମତେ କୋଇଲିବୈକୁଣ୍ଠରେ କହିଥିଲା, 'କୃଷ୍ଣଙ୍କୁ ଦେଖିବାକୁ ଏ ସିଆଳିଲଟା ତଳକୁ ଆସିଲି ।'

—"କୃଷ୍ଣଙ୍କୁ ଦେଖିବାକୁ ?"

—"ହଁ, ସେ କହିଲା, "ସିଆଳିଲଟା ତଳେ ଜାରାଶବର କଳା କାହ୍ନୁର କାମୁକୋଳି ରଙ୍ଗଲିପା ପଦ୍ମପାଦକୁ ହରଣ କାନ ଭାବି ଶର ବନ୍ଧିଥିଲା । ଆଉ ସେଇ ସିଆଳିଲଟା ତଳେ କୃଷ୍ଣଚନ୍ଦ୍ର ସମାଧି ଲଭିଛନ୍ତି ଏଇ କୋଇଲିବୈକୁଣ୍ଠରେ ।"

—"ତୁମେ କ'ଣ ପୁରୁଷୋତ୍ତମଧାମ ଯାଇନା ଆଉ ।"

—"ମତେ ଶହେ କେତେ ବର୍ଷ ହେଲା । ଯା' ଭିତରେ ରାଇ ମତେ ଗଣ୍ଡଗୋବର୍ଦ୍ଧନ, ତା' ଜନ୍ମଜାଗା ବର୍ଷାନା, ନନ୍ଦଗ୍ରାମ, ରାଧାକୁଣ୍ଡ, ଶ୍ୟାମକୁଣ୍ଡ, ଚଉରାଅଶୀ କୋଶ ବ୍ରଜ ସବୁ ବୁଲେଇଛୁ । ଯେବେ ଯେଉଁଦିନ ଯେଉଁ ମୁହୂର୍ତ୍ତରେ ଚାହିଁଛୁ, ପୁରୁଷୋତ୍ତମଧାମକୁ ନେଇଯାଇଛୁ । କୋଇଲିବୈକୁଣ୍ଠରେ ଲୀଳା ଦେଖେଇଛୁ ।"

ରାଇକଥା ଭାବି ଭାବରେ ଗଦ୍‌ଗଦ୍ ହୋଇ ଲକ୍ଷ୍ମଣ ସୁଆଁ ପିଆ ଲୁହ ପୋଛୁଛନ୍ତି ଦୁ' ଆଖିରୁ । ମନ୍ଦିର ପହଡ଼ ଖୋଲିବାରୁ ମତେ ନେଇ ବଳଭଦ୍ର, ଜଗନ୍ନାଥ, ସୁଭଦ୍ରାଙ୍କ ଦର୍ଶନ କରେଇ ପ୍ରସାଦ ହାତରେ ଦେଉ ଦେଉ କହିଲା, "ଆଜ ରାଇ ଏଠିକି ଆସିବ ।"

ମୁଁ ପଚାରିଲି, "କେମିତି ଜାଣିଲ ?" ସେ ହସି ହସି କହିଲା, "ଯେଉଁଦିନ ବୃନ୍ଦାବନର ଏ ଜଗନ୍ନାଥ ମନ୍ଦିରଟିରେ ଶ୍ରୀଜଗନ୍ନାଥଙ୍କ ମୁଣ୍ଡରେ ମୟୂରଚୂଳ ମନକୁ ମନ ଶୋଭାପାଏ, ସେଦିନ ରାତିରେ ରାଇ ଆସେ ।"

ଦେଖିଲି, ଶ୍ରୀଜଗନ୍ନାଥଙ୍କ ମୁଣ୍ଡରେ ସୁନ୍ଦର ମୟୂରଚୂଳ ଶୋଭାପାଉଛି ! ଉତ୍କଣ୍ଠିତ ହୋଇ ପଚାରିଲି, "ଆଜି ରାଇ ସାଙ୍ଗେ ଦେଖାହେବ ?"

ଲକ୍ଷ୍ମଣ କହିଲା, "ହଁ, ରାଧାରାଣୀଙ୍କୁ ଏଇଠି ବସି ବିକଳ ପ୍ରାର୍ଥନା କର । ଜଗନ୍ନାଥଙ୍କୁ ପ୍ରାଣର ଗୁହାରି କର । ରାତି ଘନଘଡ଼ି ସରିକି ଯମୁନା ଜଳ କହ୍ଲ ଆଲୁଅରେ ହସି ଉଠିଲାବେଳକୁ ଓ ସେଇ କଦମ୍ବମୂଳରୁ ବଂଶୀଧ୍ୱନି ଭାସି ଉଠିବା ସାଙ୍ଗେ ସାଙ୍ଗେ ରାଇ ହସି ହସି ଏ ପାହାଚ ଦେଇ ମନ୍ଦିରକୁ ଚାଲିଆସିବ ଅପୂର୍ବ ଭଙ୍ଗୀରେ..."

ପୁଣି କ'ଣ ଭାବି ଲକ୍ଷ୍ମଣ ସୁଆଁ ପିଆ ଚୁପ୍ ହୋଇଗଲା । କିଛିବେଳ ପରେ ପୁଣି ଥରେ ଭାବବିହ୍ୱଳ ସ୍ୱରରେ କହିଲା, "ହଁ ବାବୁ, ଅପେକ୍ଷା କର, ଆଜ ରାତିରେ ରାଇ ଆସିବ ।"






ଏ ଚରିତ୍ର ଏବେବି ପଶ୍ଚିମବଙ୍ଗର ମୁର୍ଶିଦାବାଦରେ ଘୂରି ବୁଲୁଛନ୍ତି। ଏ ଚରିତ୍ର ସହ ଲେଖକ ପ୍ରାୟ ଏକ ସପ୍ତାହ କାଳ ମୁର୍ଶିଦାବାଦ, ନଦିଆ, ମାୟାପୁରରେ ବୁଲିବୁଲି ଚିତ୍ରଟିକୁ ଆଙ୍କିଛି। ଚାହିଁଲେ ପଦଠାକୁରଙ୍କୁ ପରିଚୟ କରେଇଦେବ ଲେଖକ, ପାଠକପାଠିକାଙ୍କୁ।

"ପଦଠାକୁର !"

ଏଇ ପଦକ ଡାକରେ ପଦଠାକୁର ତାଙ୍କ ଭାବନାରାଜ୍ୟରୁ ଫେରି-ଆସିଲେ। ଆଖି ଆଗରେ ଠିଆ ହୋଇଛି ସଦ୍ୟବିବାହିତା ତରୁଣୀ। ମୁଖମଣ୍ଡଳରେ ତା'ର ଭରିରହିଛି ଭୟ, ଆଶଙ୍କା ଆଉ କେତେ କେତେ ଆଜେବାଜେ ଚିନ୍ତା। ରାତି ଘଡ଼ିଏ ହେଲାଣି, ବିଧବା ଶାଶୁ ଆଉ ସ୍ୱାମୀ ଏ ପର୍ଯ୍ୟନ୍ତ ଫେରିନାହାନ୍ତି ନଣନ୍ଦଘରୁ। ସନ୍ଧ୍ୟା ନ ହେଉଣୁ ଗୁଳି ଆରମ୍ଭ ହୋଇଯାଇଛି ସୀମା ଆରପାରିରୁ। ଦିନ ବାରଟାବେଳେ ଗାଁ ସାରା ଚହଳ ପଡ଼ିଗଲା ଭାରତ-ପାକିସ୍ତାନ ଭିତରେ ଯୁଦ୍ଧ ଲାଗିଗଲା ବୋଲି। ଶାଶୁବୁଢ଼ୀ ବ୍ୟସ୍ତ ହେଲେ ସୀମା ସେପଟେ ପାକିସ୍ତାନରେ ଥିବା ଝିଅକୁ ଦେଖିଆସିବାକୁ। ପୁଅ-ବୋହୂ ସମସ୍ତେ ବାରଣ କଲେ। ବୁଢ଼ୀ କିଛି ଶୁଣିଲାନି। ଏକୁଟିଆ ବାହାରିଲା, ବାଧ୍ୟ ହୋଇ ପୁଅ ସାଙ୍ଗରେ ଗଲା। ଗଲା ବାଟରେ ସେ ବାଡ଼ିତଳ ପୋଖରୀହୁଡ଼ାରୁ ଶେଷଥର ପାଇଁ ଚାହିଁଥିଲା ବିଜୟାକୁ। ମାତ୍ର ସାତଦିନ ତଳେ ବିଜୟା ଆସିଥିଲା ବିଜନର ଘରକୁ ବୋହୂ ହୋଇ।

ଗଲାବେଳେ ଶାଶୁ ବୁଢ଼ୀ ତାଗିଦ୍ କରିଦେଇ ଯାଇଥିଲା, "ବୋହୂ ମା, ଯା' ହେଲେ ବି ଦୁଆର ଖୋଲିବୁନି । ଯୁଦ୍ଧ ଲାଗିଯାଇଛି । ତାହାଲି କୁକୁର ଭଳି ଶତ୍ରୁ ସୈନ୍ୟ ମାଡ଼ିଆସନ୍ତି, ଆଉ ଅତ୍ୟାଚାର କରନ୍ତି । ସାବଧାନ ରହିବୁ ।"

ବିଜୟା ଦ୍ୱାର ଦେଇ ଭୟଭୀତ ହୋଇ ଘରେ ବସିରହିଥିଲା. ବିଜନଙ୍କ ଫଟୋକୁ ଚାହିଁ । ସେମାନଙ୍କ ଯିବା ପରେ ପରେ ଗୁଳି ଚାଲିବା ଆରମ୍ଭ ହୋଇଗଲା । ବାଡ଼ି ଦୁଆରର ସାତପୁରୁଷ କବାଟ ଉପରେ କେତେ ଯେ ଗୁଳି ବାଜିଲାଣି, ତା'ର ସୀମା ନାହିଁ । ଠାଏ ଠା'ଠା ବି କଣା ହୋଇଗଲାଣି ।

ବିଜୟା ଥରି ଉଠୁଥାଏ । ଗାଁ ସାରା କେମିତି ଗୋଟାଏ ଶୁନ୍ଶାନ୍ ହୋଇଯାଇଥାଏ । ଗୁଳି ଫୁଟିବା ଶବ୍ଦ ଭିତରେ କେତେବେଳେ କେମିତି ବିକଳ ଚିତ୍କାର ଛଡ଼ା ଆଉ କିଛି ଶୁଭୁ ନ ଥାଏ । ଠିକ୍ ସେତିକିବେଳେ ବିଜୟା ଶୁଣିଲା କବାଟରେ ଠକ୍ ଠକ୍ ଶବ୍ଦ । ଛନଛନ ଛାତିଟା ତା'ର ଥରିଉଠିଲା । କବାଟର ମୃଦୁ 'ଠକ୍' 'ଠକ୍' ଶବ୍ଦ ଧୈର୍ଯ୍ୟ ହରାଇ ଜୋର୍ ହୋଇଉଠିଲା । ମନରେ ସାହସ ଧରି ବିଜୟା ପଚାରିଲା, "କିଏ ? ··· କିଏ ?"

—'ମୁଁ ।'

—'ପରିଷ୍କାର ନାଁ କୁହ ।'

—"ପଦଠାକୁର ।"

ବିଜୟା ମନରେ ସାମାନ୍ୟ ବଳଆସିଲା । ଏଇ ସାତଦିନ ତଳେ ପଦଠାକୁର ତା'ର ବାହାଘରକୁ ଆସି ମୁଣ୍ଡରେ ହାତବୁଲେଇ ଆଶୀର୍ବାଦ କରିଯାଇଥିଲେ । ସେଦିନ କହିଥିଲେ, "ତତେ ଜଗନ୍ନାଥ ସାହା ହୋଇଥାନ୍ତୁ ମା' । ତୋ ପଛେ ପଛେ ମୁଁ ତୋ ନୂଆ ଘରକୁ ଯିବି ଜୟା । ବାକି ପଇସା ରହିଯାଇଛି । ଆଦାୟ କରି ଆଣିବି । ତୋ ଶାଶୁକୁ ବି ବହୁତ ଦିନ ହେଲା ଦେଖିନି । ବସୁରି !"

ଦୁଆରେ 'ଠକ୍' 'ଠକ୍' ଶବ୍ଦ ବାଜିଗଲା । ବିଜୟା ଦୌଡ଼ି ଯାଇ ଦୁଆର ଖୋଲିଦେଇ ଭୟରେ ଲେସଡ଼ି ପଡ଼ି ପଦଠାକୁରଙ୍କ ଗୋଡ଼ ଧରିପଡ଼ିଗଲା । ସେ ଭୟରେ ବରଡ଼ାପତ୍ର ଭଳି ଥରୁଥାଏ । ପଦଠାକୁର ତାକୁ ତଳୁ ଉଠାଉ ଉଠାଉ ବାଁ ହାତରେ କବାଟ କିଳିଦେଲେ ।

ନିଜ ମୁଣ୍ଡ ଝାଳ ପୋଛୁ ପୋଛୁ ସେ ପଚାରିଲେ, "ବିଜନ୍ ନାହିଁ··· ଶାଶୁ··· ।"

ତା'ଠାରୁ ସେମାନଙ୍କ ବିଷୟରେ ଉତ୍ତର ପାଇ ପଦଠାକୁର ଏଣୁତେଣୁ କ'ଣ ଗୁଡ଼ାଏ ଭାବିଲାବେଳକୁ ବିଜୟା ଆକୁଳ ଭାବରେ ଡାକିଲା, "ପଦଠାକୁର !"

ଚନ୍ଦ୍ରାଙ୍କ ବାକ୍ୟରୁ ଫେରଆସି ପଦଠାକୁର ପଗ୍ଭରିଲେ, "କ'ଣ କହୁଚୁ ମା' ?"

—"ଯେତେ ଜୋର୍‌ରେ ଗୁଳି, ଗୋଳା, ବାରୁଦ ଛୁଟିଆସୁଛି, ଏତେବେଳେ କ'ଣ ହେବ, କହୁ ହେଉନ । ତୁମେ କ'ଣ ଆଜି ରାତିରେ ଯାଇପାରିବ ?"

—"ଟଙ୍କା କେତେଟା ପାଇଁ ଆସିଥିଲି, ବଜନ୍ ତ ନାହିଁ, ଶାଶୁବୁଢ଼ୀ..."

—"ନା, ନା, ପଦଠାକୁର, ତୁମେ ଯାଅନା, ଏ କାଳରାତି...ବଡ଼ ଡର ଲାଗୁଛି । ଅନ୍ତତଃ ସେମାନେ ଆସିବାଯାଏ..."

ତା' କଥା ଅଧାରେ ରହିଗଲା । ହଠାତ୍ ଗୋଟାଏ ବୋମା ଫୁଟିବାର ଶବ୍ଦରେ ଦୁହେଁ ଚମକି ପଡ଼ିଲେ । ପଦଠାକୁର ତଳେ ଥୋଇଥିବା କୋଥଳି ପାଖରେ ବୋମାରୁ ଛୁଟିକି ଆସିଥିବା ଖୁଲାଏ ମୁନିଆଁ କାଚ ପଡ଼ିଲା ।

ବଜସ୍ତା ଗୋଟାପଣ ଥରି ଉଠିଲା । ପଦଠାକୁର ଉପରକୁ ହାତ ଟେକିଲେ, "ହେ ଜଗନ୍ନାଥ, ରକ୍ଷାକର ।"

ଆହୁରି ଗୋଟାଏ ବୋମା ପଡ଼ିଲା ଆଉ ଛୁଟିକି ଆସିବା ମୁନିଆଁ ଲୁହାଖଣ୍ଡେ କୋଥଳି ଆରପଟେ ପଡ଼ି ନିଆଁ ଝଲସି ଉଠିଲା । ଏଥର ପଦଠାକୁର ମୁଣ୍ଡରେ ବୁଦ୍ଧି ପଶିଲା । ସବୁ ବୋମା କୋଥଳି ଆରପଟେ ପଡୁଛି । ତାକୁ ଡେଇଁ ପାରୁନି । କୋଥଳି ଭିତରେ ଅଛି ଜଗନ୍ନାଥଙ୍କ ମହାପ୍ରସାଦ—ଫଟା । ସେ ବଜସ୍ତାଙ୍କୁ ପଗ୍ଭରିଲା, "କିଛି ବୁଝିପାରୁଛୁ ?"

—"ନା ।"

—"ଘରେ ନଶୁଣୀ ଅଛି ?"

— "ହଁ"

—"ଆଣ ।"

ତଳଓଳି ଘୁଳରେ ବନ୍ଧା ହୋଇଥିବା ନଶୁଣୀଟାକୁ ବଜସ୍ତା ଟିଟେଇ ଆଣି ପଦଠାକୁର ପାଖରେ ପହଞ୍ଚାଇ ଦେଲା । ବାଡ଼ିଲଗ୍ନରେ ସିଢ଼ି ଲଗାଇ ପଦଠାକୁର ଉଠିଲେ ତା' ଉପରେ । କୋଥଳିଟିକୁ ନେଇ ସେ ଘୁଳ ଉପରେ ରଖିଦେଲେ । ସନ୍ତର୍ପଣରେ ଓହ୍ଲାଇଆସି କହିଲେ, "ଜଗନ୍ନାଥଙ୍କ କୃପା ।"

ଦେଖିଲି, ଯେତେଥର ବୋମା ପଡୁଛି, କୋଥଳି ଆରପଟେ ଛୁଟିକି ପଡୁଛି । ଟପି ଯାଉନି, ଜଗନ୍ନାଥଙ୍କ ମହାପ୍ରସାଦ ଆଉ ଫଟୋ ଅଛି । ପ୍ରଭୁ ବୁଦ୍ଧି ବତେଇ ଦେଲେ । ସାଧ୍ୟ ନାହିଁ ସ୍ୱା'ଙ୍କୁ ଟପି କାହାରି ଆସିବାକୁ ।"

ବଜସ୍ବା ହାତ ଉଠାଇଲା ମୁଣ୍ଡ ଉପରକୁ । "ପ୍ରଭୁ କଳାଠାକୁର ଭରସା । ଗୋବର୍ଦ୍ଧନ ହାତ ଟେକି ଦେଲେ ଇନ୍ଦ୍ରର ବଜ୍ର ବି ହାର ମାନିବ ।" ପଦ୍ମଠାକୁର ଗୁହିଁ ଦେଖିଲେ । ଉଆଁ ଗୁଳ ଉପରେ ଜଗନ୍ନାଥେ ବଜେ କରିଛନ୍ତି । କିନ୍ତୁ··· । ମନରେ ତାଙ୍କର ନାଚି ଉଠିଲା ନିଜ ଗାଁର ଗ୍ଲେଟ ଘଟଣାଟି । ପୁରୀଠାରୁ ଅଧଘଣ୍ଟାର ବାଟ ତାଙ୍କ ଶାସନ ଗାଁ । ଦ୍ୱିତୀୟଯୁଦ୍ଧ ମଝିରେ ଯେଉଁ କୋଠାଘର ଅଛି, ତା' ଉପରୁ ଗୁହିଁଲେ ନୀଳଚକ୍ର ଦିଶେ । ଜଣଙ୍କ ଘରେ ଅଘଟଣ ଘଟିଥିଲା କେତେବର୍ଷ ତଳେ । କୁଆଡୁ ଆସି ହାଡ଼ମାଳ, ଭଙ୍ଗାହାଣ୍ଡି, ଟୋକେଇ, ମଶାଣି ଜିନିଷ ସବୁ ଜମାହୋଇ ପଡୁଥାଏ, ତା' ଘର ଅଗଣାରେ । ଦୁଆରଯାକ ପାହାଡ଼ ଉଆଁରେ ହାଡ଼ମାଳ । ସେ ସେତେବେଳେ ଗାଁରେ ଥାଆନ୍ତି । ପ୍ରଥମଖଣ୍ଡିର ଶହେ ବର୍ଷର ମହାପାତ୍ର ଖଇନା କହୁଥିଲା, "ଆରେ, ଅଭଡ଼ା କୁଡୁଆଟାଏ ଆଣି ଥୋଇଲ, ଦେଖିବା କ'ଣ ହେଉଛି ।" ଅଭଡ଼ାକୁଡୁଆ ଥୁଆ ହେଲା, କିନ୍ତୁ ହାଡ଼ବର୍ଷା ବନ୍ଦ ହେଲାନି ।

ବୋହୂମା ଚୁପ୍ ଚୁପ୍ କହିଲା, "ପଦ୍ମଠାକୁରେ, ପ୍ରଭୁର ଇଚ୍ଛା । ଆଉ ଏ ଘରକୁ ଗୁଳି ଆସୁନି ।" ସେ ତଳେ ମୁଣ୍ଡ ଲଗାଇ ପ୍ରଣାମ କଲା ଜଗନ୍ନାଥଙ୍କୁ । ପଦ୍ମଠାକୁର ଥରେ ଗୁହିଁଲେ ଗୁଳ ଉପରେ ତାଙ୍କ କୋଥଳିକୁ ଓ ଆଉ ଥରେ ବଜସ୍ବାର ମୁହଁକୁ । ଟିକିଏ ରହି ରହି କହିଲେ, "ଡରନା, ଏଥର ସବୁ ଠିକ ହୋଇଯିବ ।"

ସତକୁ ସତ ସବୁ ଠିକ୍ ହୋଇଗଲା । ରାତିସାରା ସେମାନେ ପିଣ୍ଡାରେ ବସି ରହିଥିଲେ । ରାତି ପାହିବାକୁ ଆଉ ଦୁ'ଘଡ଼ି ଖଣ୍ଡେ ଥାଏ । ହଠାତ୍ ବୁଟ୍ ଯୋତାର ଭାରି ଆବାଜ ମାଡ଼ି ଆସିଲା ବାଡ଼ଦୁଆର ପାଖକୁ । କବାଟରେ ଜୋର୍ ଧକ୍କା, "କିଏ, ଆରେ ଘରେ କିଏ ? ଜଲ୍‌ଦି ଖୋଲ ।"

ଆଉ ଜଣେ କିଏ କହିଲା, "ଏ ଘରେ ବି ମାଲ୍ ଥିବେ ।"

ତା'ପରେ ପିଶାଚର ହସ । ବଜସ୍ବା ଥରି ଉଠିଲା । ପଦ୍ମଠାକୁରଙ୍କ ଗୋଡ଼ ଦୁ'ଟା ସେ ଧରି ପକେଇଲା । ପଦ୍ମଠାକୁର ଚୁପ୍ ରହିବାକୁ ନିର୍ଦ୍ଦେଶ ଦେଲେ । କବାଟରେ ଆଘାତ ବଢ଼ି ଉଠିଲା । କିଏ ଗୋଟାଏ ଜୋରରେ ଗୋଇଠା ମାଇଲା କବାଟକୁ । ମିଞ୍ଜି ମିଞ୍ଜି ଜଳୁଥିବା ଆଲୁଅରେ ପଦ୍ମଠାକୁର ଦେଖିଲେ ବୋହୂମା ଆଖିରେ ଦୁ'ଧାର ଲୁହ ।

କବାଟରେ ଧକ୍କା ବଢ଼ି ଉଠିଲା । ଯେମିତି ଏଇ ମୁହୂର୍ତ୍ତିରେ ଭାଙ୍ଗି ପଡ଼ିବ । ପଦ୍ମଠାକୁର ଚାହିଁଲେ ଚାଳ ଉପର କୋଥଳିକୁ । ଏ କ'ଣ ? ଝଲକାଏ ପବନରେ କୋଥଳିଟା ଗଡ଼ିପଡ଼ିଲା ବାଡ଼ିଆଡ଼କୁ । ଭିତରେ ଥିବା ଡାଳ, ଗ୍ଲେଟ ଦର୍ପଣ ଆଉ କେତେ କ'ଣ ଦୁମ୍‌କିନା ପଡ଼ିଲା କବାଟ ପାଖରେ । ତା'ପରେ ଶୁଭିଲା, "ଭାଗୋ । ଭାଗୋ । ଭିତର୍ ସେ ବୋମା···ଓଃ ମର୍‌ଗୟା···"

ତା'ପରେ ଜୋର୍‌ରେ ଦଉଡ଼ିବାର ଶବ୍ଦ । ବୋହୂମା' ପୁଣି ମୁଣ୍ଡ ନୁଆଁଇ ଦେଲା, "ହେ ପ୍ରଭୁ ଜଗନ୍ନାଥ"···ପଦ୍ମଠାକୁର କେମିତି ଗୋଟାଏ ବିଶ୍ୱାସ ଅବିଶ୍ୱାସ ଆଖିରେ ଚାହିଁ ରହିଥିଲେ ବାଡ଼ି ଆଡ଼କୁ ।

ରାତି ପାହି ଆସିଲା । ଗାଆଁ ଦାଣ୍ଡରୁ ଗୋଳ ଚହଳ ଶୁଭିଲା । ଲୋକମାନେ ବାହାରକୁ ବାହାରିଲେ । ପଦ୍ମଠାକୁର ଜୋର୍‌ରେ ବୋଲିବାକୁ ଲାଗିଲେ "ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ"···

ବୋହୂମା' ବାଡ଼ିରୁ ଜଗନ୍ନାଥଙ୍କ ଫଟୋ ଓ ମହାପ୍ରସାଦକୁଡ଼ିଆ ଗୋଟାଇବାରେ ଲାଗିଥାଏ ।

ଏମିତି ବୁଲି ବୁଲି ବାଙ୍କଥିବା ଠାକୁରଙ୍କ ମନାସିଥିବା ଟଙ୍କା ଆଦାୟ କରି ପଣ୍ଡାପାଖକୁ ପଠେଇବା ଗୁମାସ୍ତା ପଦ୍ମଠାକୁରଙ୍କ ନିତିଦିନିଆଁ କାମ । ତାଙ୍କୁ ଯେତେବେଳେ ତିରିଶବର୍ଷ, ସେତେବେଳଠାରୁ ପଦ୍ମଠାକୁର ଏ ଗୁମାସ୍ତାଗିରି ଆରମ୍ଭ କରିଥିଲେ । ଇତିମଧ୍ୟରେ ଷାଠିଏବର୍ଷ ବିତିଗଲାଣି । ଏଇକ୍ଷଣି ତାଙ୍କ ଚଉବନ । କାଳଘଣ୍ଟା ଆଗେଇ ଆସୁଛି । ଗୋଡ଼ ହାତ ଥକି ପଡ଼ିଲାଣି । ଗ୍ରାମ୍ୟଦାନ୍ତ ଦି'ଟା ବର୍ଷେ ହେଲା ଗଳି ପଡ଼ିଲାଣି । ଚମ ଟିକିଏ ଢ଼ିଲା ହେଲାଣି । ତଥାପି ଧନ୍ଦାରେ ମନ ଦେବାକୁ ହେବ । ଦି'ଗୁଣ ଦିନକୁ ପଣ୍ଡା ତାଗିଦା ପଠାଉଛି, ···"ଏସନ ସବୁ ମାନ୍ଧା, ପଣି ଟଙ୍କା ଜଲ୍‌ଦି ପଠା···।"

ପଦ୍ମଠାକୁର ଚଢ଼ିଯାଇ ବେଳେ ବେଳେ ବିରକ୍ତ ହୋଇ ବିଳିବିଳେଇ ଉଠନ୍ତି, "···ଓଃ ଏଠି ଯେମିତି ଟଙ୍କା ଖଣି ପଡ଼ିଛି । ଖାଲି ହରଚଣ୍ଡୀ ସହରୁ ଫର୍‌ମାସ ପଠେଇଦେଲେ ଯେମିତି ମୁଁ ଏଠି ଟଙ୍କାଗଛ ହଲେଇ ମନିଅର୍ଡର କରିଦେବି । ହୁଁ···"

ହଠାତ୍ କିଏ ଜଣେ ଆସି ପାଦରେ ମୁଣ୍ଡ ଲଗାଇଲା, "···ପଦ୍ମଠାକୁର ! କେତେବେଳେ ଆସିଲେ ? ଆଜି ଆମର ପରମ ଭାଗ୍ୟ, ସକାଳୁ ସକାଳୁ ଜଗନ୍ନାଥ ଘରେ ବିଜେ କଲେଣି । ତୁଳସୀ ! ଅଛୁ ତ ? ଟିକେ ଦବ । ଘରେ ଖୋକନ ଦେହଟା ବହୁତ ଖରାପ । ଔଷଧ ପାଇଁ ଯାଇଥିଲି ।"

ପଦଠାକୁର ଶୁଣୁଥିଲେ । ଏକା ନିଃଶ୍ୱାସରେ ଗୋପାଳ ସବୁକଥା କହିଗଲା ।
ଆଗରେ ଦିଶୁଛି ଭାଗୀରଥି ଆଉ ଜଳାଙ୍ଗି ନଈର ମିଶିଯାଇଥିବା ଧାର ଦୁଇଟି ।
ଡଙ୍ଗା ଆରପାରିରୁ ଆଗେଇ ଆସୁଛି । ଆରପାରି ଶ୍ରୀନାଥପୁରରେ ଗୋପାଳ ଦେ'ର
ଘର । ଦେଖାହେଲେ କେବେ ଗୁରୁବନ୍ଦ । ଏମିତି ଚର୍ଚ୍ଚା କରିବ, ସତେଯେମିତି
ପଦଠାକୁର ଜଗନ୍ନାଥଙ୍କର ବଳେପ୍ରତିମା ।

—"ଖୋକନ ଦେହ କ'ଣ ଖୋଇଛି ?" ପଦଠାକୁର ପଚାରିଲେ ।

—"ଡାକ୍ତର ପାଖୁ ଦଉଡ଼ି ଦଉଡ଼ି ଥକିଲିଣି ପଦଠାକୁର । ରୋଗ କ'ଣ
କିଛି ଜାଣିପାରୁନି । ଦେହରେ ଖଇଫୁଟା ତାତି ସେମିତି ରହିଛି, ଆଜିକି ମାସେ
ହେଲା । ଖର୍ଚ୍ଚ କରି କରି ହାଲିଆ ହେଇଗଲିଣି । ମାଇନା ମିଳିନି ! ଏ ଯାଏ
ଜଇନ ହେଇନି । ତୁମ ବୋହୂମା ସୋନା ଦିନରାତି ଖୋକନକୁ କୋଳରେ ଧରି
ବସିଛି । ପଦଠାକୁର ! ଖୋକନ୍..."

ତା' ଆଖିରୁ ଝରିପଡ଼ିଲା ଦି'ଟୋପା ଲୁହ । ପଦଠାକୁର ଲୁହ ପୋଛୁ
ପୋଛୁ ପଚାରିଲେ, "ଡାକ୍ତର ପାଖୁ ପରା ଯାଇଥିଲୁ ଔଷଧ ପାଇଁ ?

—"ନା, ଡାକ୍ତରବାବୁ ନାହାନ୍ତି, କଲ୍‌ରେ ଯାଇଛନ୍ତି । ତେବେ..."

—"ତା'ହେଲେ କ'ଣ ହେବ ବର୍ତ୍ତମାନ ?" ପଦଠାକୁର ବିକଳ ହୋଇ
ପଚାରିଲେ । ଖୋକନ୍‌ର ମୁହଁଟା ତାଙ୍କ ଆଖିରେ ନାଚି ଉଠିଲା । ଆହା !
ସୋନା ବି କି ଉଦ୍‌ବେଳିତ ହେଉଥିବ । ପଦଠାକୁର ଶୁଣିଲେ, ଗୋପାଳ
ଯେମିତି କ'ଣ ପଚାରିବାକୁ ଯାଉଛି ।'

—"କ'ଣ ?"

—"ତୁଳସୀ ଅଛି ଜଗନ୍ନାଥଙ୍କର ?"

—"ହଁ"

—"ବେଶ୍, ଏଇ ହେଲା ସବୁ କିଛି । ଆଉ ଡାକ୍ତର ଟାକ୍ତର ନାହିଁ ।
ସବୁ ଫାଲ୍‌ତୁ । ଆମ ଗାଁର ଚୋରା ଗନୁ ଯେଉଁଦିନଠୁ ଖନ ଖନ କଥା କହି
ଶେଷରେ ବକ୍ ବକ୍ କରିବା ଆରମ୍ଭ କରିଦେଲା, ସେଇ ଜଗନ୍ନାଥଙ୍କ ତୁଳସୀ
ସବୁଦିନେ ପାଇ, ସେଇ ଦିନଠୁ ଡାକ୍ତର ଟାକ୍ତର ଉପରେ ମୋଟେ ଭରସା
ହେଉନି ପଦଠାକୁର । ଜଗନ୍ନାଥଙ୍କ ତୁଳସୀ..."

ପଦଠାକୁର ଅନ୍ୟମନସ୍କ ହୋଇଗଲେ । ସତେତ, ଗନୁର ବାବା ଶ୍ୟାମଳ
ଚଟ୍ଟୋପାଧ୍ୟାୟ ଏମିତି ଦିନେ ଡଙ୍ଗାପାଖରୁ ତାଙ୍କୁ ପାଛୋଟି ନେଇଥିଲା ତା'
ଘରକୁ, ଆଜିକୁ ବାର ବର୍ଷ ତଳେ । ଗନୁକୁ ସେତେବେଳେ ଛଅ ବର୍ଷ ।
ସେତେବେଳଯାଏ ତା' ପାଟି ଖୋଲୁ ନ ଥାଏ । ଘୁଙ୍ଗା ଝିଅଟା ସାରା ପରିବାରର

ବୋଧ୍ ହେଉଥାଏ । ପରବାରର କାଣୀବରଡ଼ଠାରୁ ଆରମ୍ଭ କରି ବୁଢ଼ା ଗୌରାଙ୍ଗ ଗୃହାର୍ଜୀ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ସେଦିନ ବେଢ଼ି ବସି ଗପ୍ପ କଥା କହୁଥିଲେ । ପଦ୍ମଠାକୁର କୋଥଳି ଫିଟେଇ ହାତକୁ ତାଙ୍କର ସେଦିନ ବଢ଼େଇଦେଲ ଶ୍ରୀଜଗନ୍ନାଥଙ୍କ ଅଧର ମାଳ । ମାଳଟା ଅକ୍ଷୁଣ୍ଣ ହୋଇ ଆସିଥିଲା ଲାଲ୍‌ବାଗରୁ ଯାଇଥିବା ଗୋଟାଏ ଯାତ୍ରୀବସରେ । ତୁଳସୀ ବୋଝେଇ ହୋଇଥିଲା ସେ ଅଧର ମାଳରେ । ଗୌରାଙ୍ଗ ଗୃହାର୍ଜୀ ମୁଣ୍ଡରେ ମାରି ଅଧର ମାଳ ଗ୍ରହଣ କଲେ ପଦ୍ମଠାକୁରଙ୍କ ହାତରୁ, ଗପ୍ପକୁ ସେଇଦିନଠାରୁ ତୁଳସୀ ଦିଆହେଲା । ଗପ୍ପର ଧୀରେ ଧୀରେ ପାଣି ଫିଟିଲା । ତା'ପରେ ଖଣେଇ ଖଣେଇ କଥା କହିବାକୁ ଆରମ୍ଭକଲା । ଅଉ ବର୍ତ୍ତମାନ ତା' ପାଟିରେ ବାଟୁଲି ବାଜୁନ ।'

ବ୍ରଖାଲ ଜଦ୍‌ଧରି ବସିଲା । ପଦ୍ମଠାକୁର ତା' ଘରେ ପାଦ ଦେଉ ଦେଉ ଖୋକନ୍‌କୁ କୋଳରେ ଧରି ବସିଥିବା ସୋନା ଆଣ୍ଠେଇପଡ଼ିଲା ତାଙ୍କ ପାଦତଳେ, ଖୋକନକୁ ସେ ପଦ୍ମଠାକୁରଙ୍କର ପାଦତଳେ ଥୋଇ ଦେଉ ଦେଉ କୌଣସିମତେ କୋହ ସମ୍ଭାଳି କହିଥିଲା, "ପ···ଦ···ଠା···କୁ···ର ।" କୋଥଳି ଫିଟାଇ ପଦ୍ମଠାକୁର ତୁଳସୀ ବଢ଼େଇଲେ ତା' ହାତକୁ ।

ରାତସାରା ପଦ୍ମଠାକୁର ବସି ରହିଲେ ରାଖାଲ ଘରର ବାରଣ୍ଡାରେ । ପାହାନ୍ତା ପହରକୁ ହଠାତ୍ ତାଙ୍କ ନିଦ ଭାଙ୍ଗିଗଲା । ଚମକପଡ଼ିଲେ—ସୋନା ଝଡ଼ି ସଢ଼ି ହୋଇ ଦଉଡ଼ ଦଉଡ଼ ଆସି ତାଙ୍କ ପାଦତଳେ ପଡ଼ିଗଲା । ପଦ୍ମଠାକୁରଙ୍କ ଛାତିଟା ଦୁଲୁକ ଉଠିଲା ।

"କ'ଣ ହେଲା ବୋହୂମା ?" ପଦ୍ମଠାକୁର ତାକୁ ତଳୁ ଉଠାଇଲେ ।

—"ଠାକୁର, ଜଗନ୍ନାଥର କୃପା, ଖୋକନର ଜର ପାହାନ୍ତାରୁ ଛାଡ଼ିଯାଇଛି ।"······

ପଦ୍ମଠାକୁର ହାତ ବଢ଼େଇଲେ ଉପରକୁ, ରତ୍ନସିଂହାସନ ଉପରେ ବସି ରହିଥିବା ସେଇ ନୀଳାଚଳନାଥ କଳାଠାକୁର ଉଦ୍ଦେଶ୍ୟରେ । ରାଖାଲ ମୁଣ୍ଡ ଛିଟି ଦେଉଥାଏ, କାନ୍ଥରେ ଟଙ୍ଗା ହୋଇଥିବା ଜଗନ୍ନାଥଙ୍କ ଫଟୋତଳେ । ପଦ୍ମଠାକୁରଙ୍କ ଆଖି ଆଗରେ କଲୁ ନାଚଗଲା ତାଙ୍କର ଅଲଅଲ ସବା ସାନ ଝିଅ ଲଳିତାର ମୁହଁଟି ।

ତହିଁ ଆରଦିନ ପଦ୍ମଠାକୁର ହକାଲୁ ବିଦାୟ ନେଇ ବାମନାପୁକର, ମାୟାପୁର, ଭରୁଇଡ଼ାଙ୍ଗା, ବଲଦଘୀ ଗାଁ ଦେଇ ସ୍ୱରୂପଗଞ୍ଜ ପହଞ୍ଚିବାରେ ବେଳ ରତରତ ହୋଇଆସୁଥାଏ । ଭାଗୀରଥି କୂଳରେ ପହଞ୍ଚିଲା ବେଳକୁ ଦୂରରୁ କିଏ ଜଣେ ଗୀତର ଲହରୀ ମେଲୁଥାଏ କୋଉ ନାଆରୁ । ଗଙ୍ଗାର ଲହରୀଗୁଡ଼ାକ ଯେମିତ ସେଇ ଗୀତ ସାଙ୍ଗରେ ତାଳ ଦେଉଥାଆନ୍ତି ! ଗଙ୍ଗାର ଆରକୂଳେ

ସ୍ୱରୂପଗଞ୍ଜ । ପାଖରେ ଥିବା ମଣ୍ଡପ ଉପରକୁ ପଦଠାକୁର ଉଠିପଡ଼ି ପାଚିଲା ନାଲିଆ ଗାମୁଛାରେ ଦି' ଗୋଡ଼ ପୋଛି ଦେଲେ, ତା'ପରେ ଗୁଣୁଗୁଣୁ ହୋଇ କୋଥଳି ଫିଟାଇ ବାହାର କଲେ ଜଗନ୍ନାଥଙ୍କ ଟିକିଏ ବଡ଼ ଫଟୋଟି । ମଣ୍ଡପ ଉପରେ ସଜାଇ ରଖି ଆରମ୍ଭ କରିଦେଲେ ପ୍ରଭୁଙ୍କ ପୂଜା । ଧୀରେ ଧୀରେ ତାଙ୍କ ଆଖି ବୁଜିହୋଇ ଆସିଲା । "ହେ ଦୀନବନ୍ଧୁ ! ହେ ପତିତପାବନ ! ହେ ଅଗତିର ଗତି ।" ପଦଠାକୁର କୋଥଳି ଭିତରୁ ଭୋଗ ବାହାର କରିବାକୁ ବାଁ ହାତ ବଢ଼େଇଲେ । ଆରେ ଚମକିପଡ଼ି ଚାରିଆଡ଼କୁ ଚାହିଁଲେ । ଏଁ କୋଥଳି ତ ନାହିଁ । ଏଇ ଟିକକ ଆଗରୁ ପୂଜା ପାଇଁ ଆଣିଥିବା ଗଙ୍ଗାଜଳ ଭର୍ତ୍ତି ପିତ୍ତଳ ଡାଲିଟି ବି ନାହିଁ । କି ବଦ୍‌ମାସ୍ । ଟିକେ ପୂଜାରେ ଆଖି ବୁଜିଛନ୍ତି କି ନାହିଁ, ଏତେକଥା କୋଉ ବେହିୁଅ କରିସାରିଲାଣି । ଧୈର୍ଯ୍ୟ ସବୁ ଚାଲିଗଲା । ପଦଠାକୁର ଜଗନ୍ନାଥଙ୍କ ଫଟୋକୁ ଚାହିଁଲେ । ସେ ଯେମିତି ହସି ହସି କହୁଛନ୍ତି, "ମତେ ଯେ କରେ ଆଶ, ମୁଁ ତା'ର କରେ ସର୍ବନାଶ ।" ପଦଠାକୁରଙ୍କ ମୁଣ୍ଡଟା ଝାଇଁ ଝାଇଁ ହୋଇଗଲା ।

ଦୂରରୁ କୋଉ ଦଉଡ଼ିବା ପାଦ ଶବ୍ଦ ଶୁଭିଲା । ଗୃହୁଁ ଗୃହୁଁ ଲଥକନା ମୋଟା ମୋଟା ପହିଲମାନ ଚେହେରାର ଦି'ଟା କାଳିଆ ଭୁଷୁଣ୍ଡା ଆସି ତାଙ୍କ ଦି'ପାଖରେ ବସିପଡ଼ିଲେ । ଦି'ଜଣଙ୍କ ହାତରେ ଦି'ଟା ହାତେ ଲମ୍ବର ଛୁରୀ । ପଦଠାକୁରଙ୍କ ପାଟିଟା ଖନ ବାଜିଗଲା, "ମୋ…ମୋ…ମୋ…ପା…ଖ…ରେ : "

—'ଗ୍ରେପ୍'

ତା' ଭିତରୁ ଗୋଟାଏ ଗର୍ଜି ଉଠିଲା । ପଦଠାକୁରଙ୍କର ସେତେବେଳେ ପିଲେହି ପାଣି । କିଛି ବି ଭାବିପାରୁନାହାନ୍ତି, କ'ଣ କହିବେ ?

—'ତୋ' ଘର ?'

—'ପ…ଦ…ଠା…କୁ…ର'

—'ଆବେ ତୋ' ଘର, ଘର…'

—'ପୁ…ରୀ'

—'ଜଗନ୍ନାଥ ପୁରୀ ?'

—'ହଁ'…

ପଦଠାକୁର ଭାବୁଥିଲେ ଲମ୍ବ ହୋଇ ପଡ଼ିଯିବେ ବୋଲି ଦୁହିଁଙ୍କ ଗୋଡ଼ ଧରି । ମନେ ମନେ 'ଜଗନ୍ନାଥ' 'ଜଗନ୍ନାଥ' ଗଡ଼େଇଯାଇଥାନ୍ତି ।

—"ଶୁଣିବେ…ଠାକୁର । କାହାକୁ କିଛି କହିବୁନି । ଓଃ କି ଦଶା, ଭାଗ୍ୟ ଭଲ୍‌ରେ ରକ୍ଷା ପାଇଗଲୁ ।"

—"ହଁ ଭାଇ ରକ୍ଷା କର ।"

"ଆବେ ନା, ତୁ ନୁହେଁ…ଆମେ ।"

—'ଏଁ' । ପଦ୍ମଠାକୁରଙ୍କ ପାଟି ପୂରା ମେଲା ହୋଇଗଲା ।

ଲୁଗାଟା ତଳକୁ ପକେଇ ଗୋଟାଏ କହିଲା, 'ଆଜେ କି ଅଜବ୍, ତୋ' ଗଣ୍ଠିଲି ଧରି ଏଇ ଆରପାଖ ବିଲରେ ମେଲେଇ ଦେଖିଛୁ କି ନା, ବାପ୍‌ରେ ବାପ୍ ଏ ମୋଟ ଲମ୍ବ ଜନ୍ତୁ ହୁଙ୍କାରୁ ଡେଇଁପଡ଼ି ଗୋଡ଼େଇଲା । ଜୀବନ ବିକଳରେ ଦଉଡ଼ୁଛୁ । ଓ ଶାଳି କି ଗୁଡ଼େ । ସୁଁ ସୁଁ ହୋଇ ପଛେ ପଛେ ଦଉଡ଼ିଲା... ବାପ୍‌ରେ ବାପ୍—ଦେଖି ତୋ' ଗଣ୍ଠିଲି ଏଇ ଯେଉଁଠି ପଡ଼ିଛୁ, ଆମେ ଛୁଇଁନୁ-କିଛି...ଆଜେ ବୁଝୁଁଛୁ କି ନା ?

—'ହୁଁ' ପଦ୍ମଠାକୁର ଢେପ ଢୋକିଲେ ।

—'ଦେଖ, କହିବୁନି କାହାକୁ । ନେ...'

ସେ ବାଁ ହାତ ବଢ଼େଇଲା । କ'ଣ ଗୋଟାଏ ବଶିଆଙ୍ଗୁଠି ଆଉ ମଝି-ଆଙ୍ଗୁଠି ଭିତରେ ଧରି । ପଦ୍ମଠାକୁର ଏଥର ଟିକେ ସାହସ ଧରି ମନା କଲେ,- "ନା...ନା..."

ଗୁରୁଗମ୍ଭୀର ସ୍ୱରରେ ସେ ଗର୍ଜି ଉଠିଲା, 'ନେ କହୁଛୁ—ତୋ' ଠାକୁରଙ୍କୁ ଭୋଗ ଲଗେଇଦବୁ...ଆମର ଯେମିତି ଆଜି ଆଉ କ୍ଷତି ନ ହୁଏ । ବୁଝିଲୁ ?'

ପଦ୍ମଠାକୁର ହାତ ବଢ଼େଇଲେ । ଆର ଜଣକ ଟର୍ଚ୍ଚ ପକେଇ ଖଣ୍ଡେ ଦୂରରେ ପଡ଼ିଥିବା ତା' କୋଥଳିକୁ ଦେଖାଇ ଦେଲା । ପଦ୍ମଠାକୁର କୋଥଳି ଉଠାଇ ସେଇ ଟର୍ଚ୍ଚ ଆଲୁଅରେ ତା' ହାତମୁଠାର କାଗଜଟାକୁ ଦେଖିଲେ... ଶହେ ଟଙ୍କା ।

ଅନ୍ଧାର ଭିତରେ ସେ ଦୁ'ଟା କୁଆଡ଼େ ଉଭାନ ହୋଇଗଲେ । କୋଥଳି ଭିତରୁ ଅନ୍ଧାରରେ ହାତମାରି ପଦ୍ମଠାକୁର ନାଲିଆ କନା ଗଣ୍ଠିଟାକୁ ଫିଟେଇ ବିଜୟା ଆଉ ପ୍ରଣାମି ଦେଇଥିବା ଦୁ'ଟା ଦଶଟଙ୍କିଆ ନୋଟ୍ ଠିକ୍ ଅଛି କି ନା ଆଗ ଦେଖିଲେ । ପଦ୍ମଠାକୁର ଏଥର ମୁରୁକୁରିଆ ହସଟାଏ ହସି ଦେଇ ସେଇ ଦୁ'ଟା ଦଶଟଙ୍କିଆ ନୋଟ୍ ସାଙ୍ଗରେ ଶହେ ଟଙ୍କା ନୋଟ୍‌ଟାକୁ ଗଣ୍ଠି ପକାଇ ଦେଲେ । ମଣ୍ଡପରୁ ଜଗନ୍ନାଥଙ୍କ ଫଟୋ ଆଣି ମୁଣ୍ଡରେ ମାରି ପୁଣି କୋଥଳିରେ ପୂରାଇଲେ । ଡିଆସିଲି କାଠିଟାକୁ ଜାଳି ଟିକିଏ ବାଁ ହାତରେ ଧରି ଡାହାଣ ହାତରେ ଗ୍ଲେଟ ଟିପାଖାତାରେ ଲେଖିଲେ, "ପ୍ରତିପଦ ଗୁରୁବାର...ମାଲିକର ଶୂନ୍...ମୋର ବିଶାଶହେ..." ଜଗନ୍ନାଥ ସୁମରଣା କରି ପଦ୍ମଠାକୁର ତଙ୍ଗାରେ ପାଦ ଦେଲେ ଆରପାରିକୁ ଯିବାକୁ ।

ସ୍ୱରୂପଗଞ୍ଜ ଗାଁଦାଣ୍ଡକୁ ସେତେବେଳକୁ ଜହ୍ନ ଆଲୁଅ ହସେଇ ଦେଲାଣି । ଗାଁଦାଣ୍ଡରେ ହୁରିପଡ଼ିଲା, "ପଦ୍ମଠାକୁର ଆସିଛନ୍ତି । ପଦ୍ମଠାକୁର ଆସିଛନ୍ତି..."ଗୋବିନ୍ଦ ବିଶ୍ୱାସର ଦାଣ୍ଡଘର ଅଳ୍ପ ସମୟ ଭିତରେ-ଗାଁଯାକର ଗ୍ଲେଟ ଗ୍ଲେଟ ପିଲରେ ଭରି ଉଠିଲା"—ସମସ୍ତେ ବେଢ଼ିଗଲେ ପଦ୍ମଠାକୁରଙ୍କୁ । ମଝିରେ ପଦ୍ମଠାକୁର ବସିଲେ । ଗୋଟାଏ ପିଲା କହିଲା,

'ପଦ୍ମଠାକୁର' ସେଇ ଜଗନ୍ନାଥର କଥାଟା ଆଜି ପୂରା କରିଦିଅ । କହନା, ଜଲ୍ଦି···—'ଅରେ ବାବୁ କୋଉଥିଏ କହିଥିଲ ଟିକେ ମନେପକାଇ ଦିଅ'—'ସେଇ ଯେ ବିଦ୍ୟାପତି ପହଞ୍ଚିଥିଲ ନୀଳକନ୍ଦର ଗୁହାରେ ବିଶ୍ୱାବସୁ ପାଖରେ···ତା' ପରେ ?'

—ହଁ ତା'ପରେ, ବିଦ୍ୟାପତିକୁ ବିଶ୍ୱାବସୁ ବହୁତ ଚର୍ଚ୍ଚା କଲ, ······ଅଗନାଅଗନ ବନସ୍ତରେ ଆଗପଛ ହୋଇ ଦୁହେଁ ଗ୍ଲଲେ······ବିଦ୍ୟାପତି ପ୍ରଥମଥର ପାଇଁ ନୀଳମାଧବଙ୍କୁ ଦେଖିଲ······ହରିବୋଲ୍···ଜୟ ଜଗନ୍ନାଥ ସ୍ୱାମୀଙ୍କ······'ଜୟ' ।

ଘରଟା ଫାଟି ପଡ଼ିଲ ସେଇ ବନ୍ଦ ହେଉ ନ ଥିବା ପିଲଙ୍କ ପାଟିରେ । ପଦ୍ମଠାକୁର ତାଙ୍କ କହିବା କଥାକୁ ଆଗେଇନେଲେ···

ଗ୍ଲରିଦିନ ପରେ ବରହମ୍‌ପୁରରୁ ଫେରିଲେ ପଦ୍ମଠାକୁର ।

ଘରେ ପାଦ ନ ଦେଉଣୁ ଗାଜଲ ଖାତ୍ରର ପାଦରେ ପ୍ରଣାମ ଜଣାଇ କହିଲ, ତୁମର ଦି'ଟା ଚିଠି ଅଛି । ମନେହୁଏ, ଗୋଟାଏ ଘରୁ ଆସିଛି ।

ଥର ଥର ହାତରେ ସେ ପ୍ରଥମ ଲଫାପାଟି ଖୋଲିଲେ । ବ୍ରିଖାଲ ଦେ' ପଠେଇଛି ଗ୍ରେଟ ଚିଠି ସାଙ୍ଗରେ ଦଶଟା ଟଙ୍କା । ଲେଖିଛି, "ପଦ୍ମଠାକୁର ! ସେଇଦିନୁ ଖୋକନର ଜର ନାହିଁ, ଆଉ ତୁଳସୀ ପଠେଇବ । ସୋନା, ଖୋକନ ଆଉ ମୋର ପ୍ରଣାମ ।"

ଅନ୍ୟ ଚିଠିଟି ଖୋଲିଲେ ପଦ୍ମଠାକୁର । ବଡ଼ପୁଅ ବଳଭଦ୍ର ଲେଖିଛି, "···ନନା···ଶ୍ରେଷ୍ଠୀ ଦିହ ବହୁତ ଖରାପ । ଯେତେ ଔଷଧ ଦେଲେ ହେଉନି··· ଆମେ ସବୁ ଆଶା ଛାଡ଼ି ତୁମକୁ ଗ୍ଲହିଁଛୁ···ଘର ଛପର ହୋଇନି···ଖେଇ ଅଡ଼ି ବସୁଛନ୍ତି କୋଉଁଏ ଟଙ୍କା ଆଉ ଓଳିଏ ଖାଇବାକୁ ଦେଲେ ଓଲ୍ଟରିବେ··· ବୋଉ ଦେହରେ ଡାକ୍ତର କହୁଛି ଜମାରୁ ରକ୍ତ ନାହିଁ···ଶୀତଳଷଷ୍ଠୀ ଯାତ୍ରା ଆଗରେ···ମୁଁ କାଲିଆ ଦି'ଜଣଯାକ ପରୀକ୍ଷାରେ ଫେଲ୍ ହେଇଚୁ···ପଦ୍ମନାଭର ଯେଉଁଠି ନିର୍ବନ୍ଧ ହେଇଥିଲ, ତା' ଶଶୁର କାଲି ମୁଦି ଆଣି ଫେରାଇଦେଲା । ଡିଆଡ଼ି ସାହି ଘରେ ସେମାନେ ବସିବେ, ସେମାନେ କୁଆଡ଼େ ଭଲ ଦିବାନିବା କରିବେ···"

ପଦ୍ମଠାକୁର ଦୀର୍ଘନିଃଶ୍ୱାସ ପକେଇଲେ । ଗାଜଲ ଖାତ୍ରର ବଡ଼ରେ ନିଆଁ ଲଗଉ ଲଗଉ ପଚ୍ଚରିଲା, "କି ଠାକୁର୍ ! ଘରେ ସବୁ ଭଲ ତ ?"

ଉତ୍ତରରେ ପଦ୍ମଠାକୁର ଆଉ ଗୋଟିଏ ଦୀର୍ଘନିଃଶ୍ୱାସ ପକେଇଲେ । ପୋଲିଓ ବେମାରି ସାନଝିଅ 'ଲଳିତା' ନାଁକୁ ଲିଭେଇଦେଇ 'ଶ୍ରେଷ୍ଠୀ' କରି ଦେଲଣି । ପଦ୍ମଠାକୁର ଆଶ୍ରୁଣ୍ଡିରେ ଆଖି ବୁଜିଲେ, ଲଳିତା ଯେମିତି ତାଙ୍କ କୋଳକୁ ଡେଇଁ ପଡ଼ିବାକୁ ହାତ ବଢ଼ାଉଛି । ସେ ଜନ୍ମ ହୋଇଥିଲ ଠିକ ବ୍ରିଖାଲ୍‌ପୁଅ ଖୋକନର ଜନ୍ମଦିନ ଦିନ ।

ଆଖି ବୁଜିଥିବା ପଦ୍ମଠାକୁର ମୁହଁରେ ଶୁଖିଲ ହସର ଗୋଟାଏ ଧାର ଗାଜଲ ଖାତ୍ରର ଦେଖିପାରିଲ ।

●

# ନାଆ ନାଗରୀ ନଟେଶ୍ୱର



ଚନ୍ଦନଯାତ୍ରା ସମୟରେ ଲେଖକ ମନରେ ଉଦୟ ହୋଇଥିଲା, ପ୍ରଭୁଙ୍କ ଚାରିଯୁଗର ଲୀଳା ସହ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ନାଆ ନାଗରୀଙ୍କ ସଂପର୍କ। ସତ୍ୟ ଆଧାରିତ କଳ୍ପନାର ଏକ ଜୀବନ୍ତ ପରିପ୍ରକାଶ।

ନରେନ୍ଦ୍ର ପୋଖରୀ ଘୂରିପଟେ ସେତେବେଳେ ଆଉ ପ୍ରାୟ କେହି ନ ଥିଲେ । ବାଆ ଥମିଯାଇଥିଲା । ପୋଖରୀ ଦାଣ୍ଡରେ ଥିବା ଅଶ୍ୱତ୍ଥ ଗଛର ପତ୍ରଟିଏ ବି ହଲୁ ନ ଥିଲା । ଘଡ଼ିକେ ଆଗରୁ ଚଳଚଞ୍ଚଳ ହୋଇ ଉଠୁଥିବା ଢେଉଗୁଡ଼ିକ ବି ହାଲିଆ ହୋଇ ଶୋଇପଡ଼ିଥିଲେ । ଚନ୍ଦନବେଢ଼ା ଉପରେ ମୂଷାଛୁଆ ବକଟେ ବି ଦେଖିବାକୁ ମିଳୁ ନ ଥିଲା । ଟିକକ ଆଗରୁ ଚକଡ଼ା ଉପରେ ନାହିଁ ନ ଥିବା ଭିଡ଼ ଥିଲା । ମଦନମୋହନ, ପଞ୍ଚପରମେଶ୍ୱର, ରାମ, କୃଷ୍ଣ, ମା' ଲକ୍ଷ୍ମୀ ଓ ମା' ସରସ୍ୱତୀଙ୍କୁ ଦର୍ଶନ କରିବାକୁ ଲୋକେ ଗୁରୁଇ ହୋଇ ଯାଇଥିଲେ ଚକଡ଼ା ସାରା । ଧଅାଁ ବାହୁଡ଼ିବା ପରେ ପରେ ସବୁ ବାହୁଡ଼ିଗଲେଣି । ସାରା ପରିବେଶଟା କେମିତି ଗୋଟାଏ ଖାଁ ଖାଁ ଲାଗୁଥାଏ । ପୋଖରୀ ପାଣିରେ, ଚକଡ଼ା ଉପରେ, ଠାଏ ଠାଏ ଠାକୁରଙ୍କ ଛିଡ଼ାମାଳ ପଡ଼ିରହିଥିଲା । ଉପର ଆକାଶରେ ଜହ୍ନରଜା ଓ ତା' ପାଖୁ ଲାଗି ରହିଥାଏ ଓଢ଼ଣା ପକାଇ ଗ୍ରେଣ୍ଟିଆ ତାରାରାଣୀଟି । ବଉଦ-ରାକ୍ଷସ ଦୂରରେ ତାଙ୍କୁ ଟାକି ବସିଥାଏ ।

ଚାରିଆଡ଼ ନୀରବ—ନିସ୍ପନ୍ଦ ।

ଚନ୍ଦନଯାତ୍ରା ଶେଷ କରି ଜଗନ୍ନାଥ ବାହୁଡ଼ିଗଲେଣି ଶ୍ରୀମନ୍ଦିରକୁ ଅନେକବେଳୁଁ । ଶ୍ରୀକ୍ଷେତ୍ରର ରାଜପଥ ବି ନିଶୂନ ହୋଇଯାଇଛି । ଚାହୁଁ ଚାହୁଁ ଜହ୍ନ ବୁଡ଼ିଗଲା । ତାରାରାଣୀ ଆଖିରୁ ଝରିପଡ଼ିଥିବା କେଇବୁନ୍ଦା ଲୁହ ଚକଡ଼ା ଚାରିପଟର ଦୂବଘାସ ଉପରେ ଟଳଟଳ ହେଲ ।

ନାଆ ଦୁଇଟି ଚନ୍ଦନଚକଡ଼ାରେ ବନ୍ଧା ହୋଇଥିଲେ । ଗୋଟିକରେ ବିଜେ କରିଥିଲେ ମଦନମୋହନ, ମା' ଲକ୍ଷ୍ମୀ ଓ ସରସ୍ୱତୀ । ଅନ୍ୟଟିରେ ଥିଲେ ରାମ, କୃଷ୍ଣ ଆଉ ପଞ୍ଚପରମେଶ୍ୱର ଶ୍ରୀ ମାର୍କଣ୍ଡ, ଶ୍ରୀ ଯମେଶ୍ୱର, ଶ୍ରୀ ଲୋକନାଥ, ଶ୍ରୀ କପାଳମୋଚନ ଓ ଶ୍ରୀ ନୀଳକଣ୍ଠ ।

ଶ୍ରୀ ମଦନମୋହନ ବିଜେ କରିଥିବା ରୂପ ନାଆର ମଙ୍ଗର ନାଉରୀର ଆଖି ବୁଜି ହୋଇ ଆସୁଥିଲା । ହଠାତ୍ ତା' ନିଦ ଭାଙ୍ଗିଗଲା । ଚମକିପଡ଼ି ସେ ଚାହିଁଲା ଏଣିକି ତେଣିକି, କାହିଁ, କେହି ନାହିଁ ତ ! କିଏ ଏମିତି ତା' ନାଁ ଧରି ଡାକୁଛି ଥରିଥରି ଅଶଲ କଣ୍ଠରେ, "...ନାଉରୀ ! ...ନାଉରୀ ! ...ନାଉରୀ !"

ଅବିଶ୍ୱାସ ଆଖିରେ ସେ ଏଣିକି ତେଣିକି ଚାହିଁଲାବେଳକୁ ସେଇ ଅଶଲ କଣ୍ଠ ପୁଣି କହିଲା, "... ନାଉରୀ ! ମୁଁ କହୁଛି, ... ... ମୁଁ ନାଆ କହୁଛି । ତୁ କ'ଣ ଚିହ୍ନି ପାରୁନୁ ? ମୋ ସ୍ୱର ବାରିପାରୁନୁ ?"

ନାଉରୀ କହିଲା, "ନାଆ......ଶୋଇନୁ ? କ'ଣ କହୁଚୁ ?"

ନାଆ ଆହୁରି ପାଖକୁ ଲାଗିଆସିଲା, ତା' ଡାହାଣ କାନ୍ଧ ଉପରେ ହାତ ପକାଇ କହିଲା, "...ନାଉରୀ ! ...ସବୁକଥା ମନେ ପଡ଼ୁଛିରେ ଆଜି, ନିଦ ମାଡ଼ୁନି ।"

—"କେଉଁ କଥା ?"

—"ସେଇ କଥା"...ଯାହାକୁ ତୁ ଆଉ ମୁଁ କେବେ ଆମ ମନ-ରାଇଜରୁ ପୋଛିଦେଇ ପାରିବାନି ।"

—"ନାଆ" ? ନାଉରୀର ମୁହଁରେ ପ୍ରଶ୍ନ ବୋଲି ହୋଇ ରହିଥିଲା । ସ୍ୱରରେ ଜୀବନ ନ ଥିଲା । ନିଜ ମୁଣ୍ଡର ଠେକା ତାକୁ ହଠାତ୍ କେଜାଣି କାହିଁକି ଓଜନିଆ ଲାଗିଲା । ସେ ସେଇଟାକୁ ନାଆ ଉପରେ ଥୋଇଦେଲା ।

ନାଆ କହିଲା, "...ନାଉରୀ ! ସତ କହିଲୁ, ତୋର କିଛି ମନେ ପଡ଼ୁନି ?"

ନାଉରୀ ନାଆ ମୁହଁକୁ ଚାହିଁଲା, ସେଇ ପାତଳା ଅନ୍ଧାର ଭିତରେ ନିରେଖି ନିରେଖି । ଦେଖିଲା ତା' ଆଖିରେ ଲୁହ । ମା' ଲକ୍ଷ୍ମୀଙ୍କ ଗଳାରୁ ଝଡ଼ିପଡ଼ିଥିବା ମଲ୍ଲୀଫୁଲ କେତୋଟିକୁ ସେ ତା' ଗୁଡ଼ ଉପରେ ଜାବୁଡ଼ିଧରି ପଗୁରୁଛି,

"···ନାଉରୀ !···ସେଦିନ କଥା···ମୁଁ ଏମିତି ଧରିଥିଲି ରାଧା ଓ କୃଷ୍ଣଙ୍କ ମୁଣ୍ଡରୁ ଖସିପଡ଼ିଥିବା ଫୁଲ କେତୋଟି···ଆନନ୍ଦରେ ମୁଁ ତାକୁ ମୋ ମୁଣ୍ଡରେ ଥୋଇ କୃତାର୍ଥ ହେଉଥିଲି । ···ତୁ ସେ ଛଡ଼ାଫୁଲ ମାଗିଲୁ···ମୁଁ ତୋ ହାତକୁ ବଢ଼େଇଦେଲି, ଆଉ ତୁ ମୁଣ୍ଡରେ ମାରି, ତୋ ପିନ୍ଧା କାନ୍ଧରେ ଗଣ୍ଠି ପକେଇଦେଲୁ···ମନେପଡ଼ୁଛି ?"

'ନାଉରୀ' କହିଲା, "ନାଆ···ସବୁ ମନେପଡ଼ୁଯାଉଛିରେ···ସେସବୁ ମନେପଡ଼ିଲେ ଦେହ ଶୀତେଇ ଉଠୁଛି । ତୁମ ଝାଙ୍କୁରି ଉଠୁଛି । ···ହଁ, ସେ କେତେ ମୁଗର କଥା···କେତେ ମୁଗର କଥା···"

ନାଆ ଗୁହିଁଲା । ନାଉରୀ ଆଖି ବୁଜିଛି, ଆଉ ସବୁ କଥା ମନରେ ଦୋହରେଇ ହେଉଛି । ତାକୁ ବଲବଲ ହୋଇ ସେ ଗୁହିଁ ରହିଥିଲା । ନାଆ କାନରେ ପଡ଼ିଲା ନାଉରୀର ସ୍ୱର, "···ନାଆରେ,···ମୁଁ ଆହୁରି ଦୂରକୁ···ଆହୁରି ଦୂରକୁ ଫେରିଯାଉଛି···ତୋର ମନେଅଛି ତ ସେ କଥା···ଯେଉଁଦିନ ଦି ହାତ ଉଚ୍ଚ ବାମନ ଲସରପସର ହୋଇ ତାଳପତ୍ର ଛତା ତଳେ ଦି'ପହର ଖରାରେ ଝାଳନାଳ ହୋଇ ଧାଇଁଥିଲେ ତୋ' ପାଖୁ ।"

ନାଆ ଆଖି ବୁଜି ହୋଇଗଲା, ସେ ଆଖିମିଛୁଡ଼ାକେ ସତ୍ୟମୁଗକୁ ଫେରିଗଲା । ସେ କହିଲା, "···ହଁ ନାଉରୀ ! ଏବେ ମନେପଡ଼ୁଯାଉଛି । ଲସରପସର ଗୁଲିରେ ତାଳପତ୍ରଛତା ତଳେ ବାମନକୁ ଆସୁଥିବାର ଦେଖି ନାଆରେ ବସିଥିବା ସବୁଲୋକ ହସିଉଠିଲେ । ···ଏ ବାମନ କେମିତି ନାଆ ଉପରକୁ ଉଠିବେ ? ଏ ବାମନ କେମିତି ନାଆରୁ ଓହ୍ଲେଇବେ ? ···ଏ ବାମନଙ୍କ ଗନ୍ତବ୍ୟ ସ୍ଥଳ କେଉଁଠି ? ···ଏ ବାମନଙ୍କର ଆତ୍ମପରିଚୟ ?

ନାଉରୀ କହିଲା, "ତୋ ଉପରେ ବସିଥିବା ସବୁ ଲୋକେ ପାଟିକରି ଉଠିଲେ, 'ନାଆ ତ ପୂରିଗଲାଣି । ଏଥର ନାଆ ଗୁଡ଼ିଦିଅ, ନାଉରୀ । ଧର୍ମଦେବତା ମୁଣ୍ଡ ଉପରେ । ଝାଇଁ ଝାଇଁ ଖରା ଆଉ ସହି ହଉନି । ମୁଁ ବାମନଙ୍କ ଆଡ଼େ ଗୁହିଁଲି । ମୋ ମନ ଟଳିଗଲା ।"

—"କ'ଣ ହେଲା ?"

—"ବାମନଙ୍କୁ ଦେଖି ଆଖିପିଛୁଡ଼ା ପକେଇ ପାରିଲିନି । ମତେ ଲାଗିଲା ସତେଯେମିତି ବାମନ ନୁହଁନ୍ତି, ପରଂବ୍ରହ୍ମ ଆଗେଇ ଆସୁଛନ୍ତି ତୋ ଆଡ଼କୁ । ମୁଁ ମଙ୍ଗକୁ ଠେସଦେଇ କାତ ଉଡ଼ିବାକୁ ଯାଉଥିଲି । ମୋ ହାତ ଅଟକିଗଲା । ଆଖି ଲାଖିଗଲା ବାମନଙ୍କଠି । ହାତ ଶିଥିଳ ହୋଇଗଲା । ତୋ ଉପରେ କାତମୁଠାକୁ ରଖି ଅଜାଣତରେ ମୋ ହାତ ଦି'ଟା ଯୋଡ଼ିହୋଇଗଲା ତାଙ୍କ ଉଦ୍ଦେଶ୍ୟରେ ।"

ନାଆ କହିଲା, "ହଁ ନାଉରୀ, ମୋର ବି ଠିକ୍ ମନେପଡ଼ୁଛି । ଲୋକେ ଯେତେବେଳେ ତାଙ୍କୁ ଟେକିଆଣି ମୋ ଉପରେ ଥୋଇଦେଲେ, ମୁଁ ଶିହରି ଉଠିଲି । ମନେ ମନେ ଭାବିଲି, 'ଏ କିଏ ?'

ନାଉରୀ କଥା ଗଡ଼େଇନେଲା, "ସେତେବେଳେ ଆମେ ଦୁହେଁ ଜାଣି ନ ଥିଲେ ବଳିରାଜା ପାଖକୁ ଏ ବାମନରୂପୀ ବିଷ୍ଣୁ ଯାଉଛନ୍ତି ଭିକ୍ଷା ମାଗିବାକୁ । ପରେ ଯେତେବେଳେ ଆମେ ଜାଣିଲେ ତାଙ୍କୁ ଦେଖିବା ଯୋଗୁଁ ନୟନ ସାର୍ଥକ ହେଲା । ନୁହେଁ ନାଆ ?"

ନାଆ କହିଲା, "ଏ ତ ଗଲା ସତ୍ୟଯୁଗ କଥା । ତା' ପରେ ତ୍ରେତାଯୁଗ କଥା ତୋର ମନେଅଛି ନାଉରୀ ।"

—"ହଁରେ ହଁ, ମନେଅଛି । ସେଦିନ କଥା—ଯେଉଁଦିନ କୌଶଲ୍ୟାଧନ ଆଉ ସୁମିତ୍ରାପ୍ରାଣ ଦି'ଭାଇ ଆସିଥିଲେ—ଆମେ ସେଦିନ ଥିଲେ ଗଙ୍ଗା ନଈରେ..."

ନାଆ ବି ଆଖି ବୁଜି କହିଲା, "...ନାଉରୀରେ, ସେଦିନ ତାଙ୍କ ସାଙ୍ଗରେ ଥିଲେ ଗୁରୁ ବିଶ୍ୱାମିତ୍ର...ଋଷିଙ୍କ ଯଜ୍ଞରେ ସେତେବେଳକୁ ବାଧା ଉପୁଜିଥିଲା... ରାକ୍ଷସ ଦଳ ସେମାନଙ୍କୁ ବସେଇ ଉଠେଇ ଦଉ ନ ଥିଲେ । କେତେବେଳେ ପବନ ବେଗରେ ଯଜ୍ଞସାମଗ୍ରୀ ଫୁଲ, ଚନ୍ଦନ, ସମିଧ ଉଡ଼େଇ ନେଉଥିଲେ ତ ଆଉ କେତେବେଳେ ହୋମକୁଣ୍ଡରେ ସେମାନଙ୍କ ଶୌଚକର୍ମ ସାରୁଥିଲେ... ।"

ନାଉରୀ ଏଥର ପଦ ଯୋଡ଼ିଲା, "...ନାଆରେ, ସେଦିନ ସେ ଜନକଜଣ-ଯାଜକ ଆସି ଗଙ୍ଗା କୂଳରେ ଠିଆ ହେଲେ । ତାଙ୍କୁ ଦେଖି ମୋ ନୟନ ପବିତ୍ର ହୋଇଗଲା, କୋଟି ଯୁଗର ପାପ ଧୋଇ ହୋଇଗଲା । ମୋର ଜନ୍ମଜନ୍ମର ପାପଅନ୍ଧାର ତାଙ୍କ ଦର୍ଶନମାତ୍ରକେ କୁଆଡ଼େ ଦୂର ହୋଇଗଲାରେ ! ମୁଁ..."

ପାଟିରୁ ତା'ର କଥା ଛଡ଼େଇ ନେଇ ନାଆ କହିଲା, "...ତୁ ସେଦିନ କେତେ ଚାଲାକି କଲୁରେ ନାଉରୀ...ମନକଥା ମନରେ ରଖି ତାଙ୍କୁ ଛନେଇ କହିଲୁ, "...ନା...ପାରି କରିବିନି...ଏ ନାଆ ତ ମୋର ସବୁ...ଏଇଥିରୁ ମୁଁ ପେଟ ପୋଷୁଛି, କୁଟୁମ୍ବ ଚଳଉଛି...ଏ ଯଦି ତୁମର ପାଦବାଲି ଲାଗି ବାଟର ପଥରଖଣ୍ଡ ଭଳି ମାଇପିଟିଏ ହୋଇଯାଏ..."

ନାଉରୀ କହିଲା, "ଜଗନ୍ନାଥ ସେଦିନ ମୋ କଥାର ମରମ ବୁଝିପାରି ହସିଥିଲେ...ଅମୃତ ସ୍ୱରରେ ପଚାରିଥିଲେ, 'ତେବେ କ'ଣ କହୁଛ ନାଉରୀ ?"

ନାଆ କହିଲା, "...ଆହା, ତୁ କି ସୁନ୍ଦର ଉତ୍ତର ଦେଲୁରେ... ଯାଆନ୍ତେ ! ତୁମ ପାଦରେ ସିନା ବାଲି ଥିଲେ । ଆଉ ସେ ବାଲି ମୋ ନାଆରେ ଲାଗିଲେ ନାଆ ଝିଅଟି ହୋଇଯିବ,...ମୁଁ ସେ ଅଘଟଣର ଉପାୟ ଜାଣିଛି, ମୁଁ ପାଦକୁ ଭଲ କରି ଧୋଇଦେବି, ତା'ପରେ ପୋଛିଦେବି...ଏତେ ଟିକେ ବି ବାଲି ସେ ପାଦରେ ରଖି ଦେବିନି ।"

ନାଉରୀ କହିଲା, "...ନାଆ ! ସେ ଯୁଗ ତଳର କଥା—ସବୁକଥା ମନରେ ଏବେ ବି ସାଇତି ରଖିଛୁ ?"

ନାଆ ପାଖକୁ ଲାଗିଆସି କହିଲା, "...ନାଉରୀ, କେମିତି ଭୁଲିଯିବା କହିଲୁ ? ପ୍ରଭୁଙ୍କୁ ତୁ ଏ କଥା କହିଲାବେଳେ ପ୍ରଭୁପ୍ରାଣ ଲକ୍ଷ୍ମଣ ସେଦିନ ତୋ ମନକଥା ବୁଝିପାରିଥିଲେ, ଆଉ ତାଙ୍କ ମୁହଁରେ କି ସେତେବେଳର ହସରେ ଧାରଟିକୁ ମୁଁ ଖୁବ୍ ଭଲ ଭାବେ ଦେଖିପାରିଥିଲି ।"

ନାଉରୀ କହିଲା, "...ବିଶ୍ୱାମିତ୍ର କିନ୍ତୁ ବ୍ୟସ୍ତ ହୋଇଉଠୁଥିଲେ ରେ । ତାଙ୍କ ମନରେ ଚିନ୍ତା ପଶିଥିଲା, ତେଣୁ ସେ କେତେ ତରତର ହେଉଥିଲେ ପାରିହେବାକୁ ।"

ତାଙ୍କୁ କହିବାକୁ ନ ଦେଇ ନାଆ କହିଲା, "...ନାଉରୀ ! ସେଦିନ ତୁ କେତେ ଜନ୍ମର ତପସ୍ୟାଫଳ ପାଇଲୁରେ...ନିଜ ହାତରେ ପ୍ରଭୁଙ୍କ ଦି' ପାଦ ଧୋଇଦେଲୁ ଆଉ ମୁଁ କେତେ ନିଉଛୁଳି ହୋଇ ଗୁହାରିହୁଥିଲି । ତୋ ଅହଙ୍କାର ଯୋଗୁଁ ପ୍ରଭୁଙ୍କ ପାଦଧୂଳି ମୁଁ ଟିକିଏ ପାଇଲିନି । ଖାଲି ତୋ'ରି ଯୋଗୁଁ ସିନା ସେ ପାଦଧୂଳି ମୁଁ ଦେହସାରା ବୋଳି ହୋଇପାରିଲିନି । ତୁ କେତେ ଧୂଆଁଣିଆରେ ନାଉରୀ ! ...ସେ ଦିନ ପାଦ ଧୋଇ ଦଉ ଦଉ ଦେବତାଲୋଭି ପାଦୁକା ପାଣି କେତେଥର ପାଟିକୁ ପକେଇ ଦଉଥିଲୁ ! ...ମୁଁ ହିଂସାରେ ଜଳିଯାଉଥିଲି ।"

ନାଉରୀ ହସିଲା, "ହଁ, ମୁଁ ବି ଠିକ୍ ଲକ୍ଷ୍ୟ କରିଛି ତୁ ରାଗ ଆଉ ହିଂସାରେ ଜଳିଯାଉଥିଲୁ । ମୁଁ ଯେତେବେଳେ ପିନ୍ଧା କାନିରେ ତାଙ୍କ ପାଦ ପୋଛିଦେଲି, ତୁ ଆଉ ସହି ନ ପାରି କହିଲୁ, "ପ୍ରଭୁ, କେତେବେଳୁ ଠିଆ ହୋଇରହିଛନ୍ତି, ତାଙ୍କୁ ଛାଡ଼ିଦେ, ଉପରକୁ ଆସନ୍ତୁ...ନୁହେଁ ?"

ନାଆ କହିଲା, "ହଁ ରେ ନାଉରୀ, ମୋ କଥା ଶୁଣି ସେଦିନ ଅନ୍ତର୍ଯ୍ୟାମୀ ହସିଦେଲେ । ଦି'ଭାଇ ମୋ ଉପରେ ଆଗ ତାଙ୍କର ଧନୁ ଥୋଇଲେ । ତାଙ୍କ ଧନୁ କୋଳରେ ଧରି ମୁଁ ନିଜର ଭାଗ୍ୟ ମଣିଲି । ଆଉ ପ୍ରଭୁ ଯେତେବେଳେ ମୋ ଉପରେ ତାଙ୍କ ପଦ୍ମପାଦ ଥୋଇଦେଲେ, ମୁଁ ତାକୁ ଜାବୁଡ଼ି ଧରିଲି । ଏପଟେ

ସେପଟ ହୋଇ ଚହଲି ଉଠିଲି ଆଉ ତାଙ୍କ ପାଦୁକାପାଣିରେ ସାରା ଶରୀରକୁ ମୋର ବୋଳି ପକେଇଲି···ଆଃ, ସେଦିନ କ ଭାଗ୍ୟରେ ନାଉଷ୍ଣ···!"

ନାଉଷ୍ଣ ଶୁଣିଲା, ନାଆ ଆଖି ବୁଜିଛି ଆଉ ତା' ଦି'ଆଖିରୁ ଦି'ଧାର ଲୁହ ବହିଯାଉଛି । ଦୁହିଁଙ୍କ ଆଖିରେ ଆନନ୍ଦର ଲୁହ । ଦୁହେଁ ସେଇ ହଜିଲା ଦିନର କଥାକୁ ମନରେ ସଜାଡ଼ି ରଖିଥାନ୍ତି ।

କୁଆଡ଼ୁ କେଜାଣି ପବନ ବହିଲା । ନାଆ ନରେନ୍ଦ୍ର ପାଣିରେ ଦୋହଲିଗଲା । ଦୁହେଁ ଆଖି ଖୋଲିଲେ ।

ନାଉଷ୍ଣ କହିଲା, "···ନାଆ, ସେମାନଙ୍କୁ ଗଙ୍ଗାରେ ଆରପାଶରେ ଛାଡ଼ିଲାବେଳେ ମନ କ'ଣ ହେଇଗଲାରେ ? ଏତେବଡ଼ ନଈଟା କେତେ ସରୁ ଲାଗିଲାରେ ? ଆହା, ଗୃହୁଁ ଗୃହୁଁ ନାଆ ଏ କୂଳରୁ ସେ କୂଳ ହୋଇଗଲା । ମରକତବର୍ଣ୍ଣା ରୂପ ଆଖିରୁ ଦୂରେଇ ଗିବେ—ସେ କଥା ଭାବି ମୋ ହାତରୁ କାତ ଖସିପଡ଼ିଲା । ତୁ ପ୍ରଭୁଙ୍କ ପାଦକୁ ଜାବୁଡ଼ି ଧରିଲୁ ଦି'ହାତରେ,···ମୋତେ ଛାଡ଼ିଲୁନାରେ··· ।

ନାଆ କହିଲା, "ସବୁ ମନେପଡ଼ୁଛିରେ ନାଉଷ୍ଣ ! ପ୍ରଭୁ ମତେ ବୁଝେଇଲେ, 'ଛାଡ଼ି ଦେ···ମୋ' ପାଦ ଛାଡ଼ିଦେ···ମୁଁ ପୁଣି ଆସିବ ।' ଲୁହବୋଳା ଆଖିରେ ମୁଁ ପଗ୍ଭରିଲି, "···କେବେ···କେବେ ଆସିବ ପ୍ରଭୁ ! ନ କହିଲେ ଜମା ଛାଡ଼ିବିନ···କହ, କହ ପ୍ରଭୁ କେବେ ଆସିବ !! କେବେ !!!"

ନାଉଷ୍ଣ କହିଲା, "···ନାଆରେ, ପ୍ରଭୁ ତତେ ତାଙ୍କ ଫୁଲ କଅଁଳ ହାତରେ ଆଉଁସି ଦେଇ କହିଲେ,···'ଦ୍ୱାପର ଯୁଗରେ···ଯମୁନା ନଈରେ···।"

ନାଆ କହିଲା, "ପ୍ରଭୁ ତାଙ୍କ କଥା ରଖିଲେ···ଆହା ଦାସବତ୍ସଳ ଙ୍କ ଦଶ୍ୱାର ଅବତାର !···ଦ୍ୱାପର ଯୁଗ କଥା ତୋ'ର ମନେ ଅଛି ତ ?"

ନାଉଷ୍ଣ କହିଲା, "ହଁରେ, ସବୁ ମନେ ଅଛି । ବାଙ୍କଚୂଳିଆ କଦମ୍ବମୂଳିଆ ତାଙ୍କ କଥା ରଖି କେତେଥର ଯମୁନା କୂଳରେ ଆସି ତୋ' ଉପରେ ବସୁଥିଲେ । ହାତରେ ତାଙ୍କର ସୁନାର ବଇଁଶୀ । କଟୀରେ ପୀତବସନ—ଚକ୍ଷୁରେ କୌସ୍ତୁଭ ମଣି—ତୁ କେତେ ଭାଗ୍ୟବନ୍ତରେ ନାଆ···"

ନାଆ କହିଲା, "ଆଉ ତୁ ?"

"—ମୁଁ ଥାଏ କି ନ ଥାଏ, ସେ ମତେ ଅପେକ୍ଷା କରନ୍ତିନ । ଗୋପୀଙ୍କୁ ନାଆରେ ବସାଇ ଏ କୂଳରୁ ସେ କୂଳ ନେଇ ଯାଆନ୍ତି । ମଝି ନଈରେ କେତେ ହଲ୍ଲସଲ୍ଲ କରନ୍ତି ତାଙ୍କୁ । ରାଗ ଅଭିମାନରେ ଗୋପୀମାନେ ତାଙ୍କୁ ପସରାର ଦୁଧ

ଦହରେ ଗାଧୋଇ ଯାଆନ୍ତି । ତୁ ସେ ଲୀଳା ମୋଠାରୁ ବେଶୀ ଦେଖିଛୁରେ, ସେ ମୁରଲୀର ଯମୁନା ଉଛୁଳା ସ୍ୱର କେତେ ଶୁଣିଛୁରେ । ଆଉ ତାଙ୍କ କଥା ତୋ'ର ମନେ ଅଛି ?"—

"କାହା କଥା ? ମା' ରାଧାଙ୍କ କଥା ତ ?"

"ନାଉରୀ କହିଲା, "ହଁ ।"

ନାଆ ହସିଲା, "କେତେ ଭାଗ୍ୟ ବଳରୁ ମୁଁ ରାଧାମାଧବଙ୍କୁ ଧରିଥିଲି ମୋ କୋଳରେ···ଆହା, କି ରୂପଲାବଣ୍ୟ···ରେ ନାଉରୀ ! କେତେଥର ପ୍ରଭୁ ଆଉ ମା' ଆମ ଦି'ଜଣଙ୍କୁ କୃତାର୍ଥ କରିଛନ୍ତି···ପ୍ରଭୁଙ୍କ ବଇଁଶୀ କେତେଥର କୋଳରେ ଧରି ମୁଁ ଧନ୍ୟ ହୋଇଛି ।

ନାଉରୀ କହିଲା, "ନାଆ, ମୋ ଯୋଗୁଁ ସିନା ତୁ ପ୍ରଭୁଙ୍କୁ ପାଇଲୁ ? ମୁଁ ନ ଥିଲେ···"

ନାଆ କହିଲା, "ନାଉରୀ,···ମୋ ଯୋଗୁଁ କ'ଣ ତୁ କୃତାର୍ଥ ହୋଇନୁ ? ସତ କହିଲୁ, ମୁଁ ନ ଥିଲେ ପ୍ରଭୁଙ୍କୁ କିଏ ବୋହି ନେଇଥାନ୍ତା ଗଙ୍ଗା ଆଉ ଯମୁନାରେ ?"

ଦୁହେଁ ଚମକି ପଡ଼ିଲେ । ଶୁଣିଲେ ମୁହଁ ଶୁଖାଇ ନାଆକୁ ଆଉକି କିଏ ଜଣେ କହୁଛି, "···ଆଉ ମୁଁ···?"

ନାଆ ଆଉ ନାଉରୀ ଉଭୟେ ଚାହିଁଲେ,···"କିଏ ? କାତ ??"

କାତ କହିଲା, "ହଁ, ମୁଁ । ମୁଁ ନ ଥିଲେ ତୁମେ ଦୁହେଁ ପ୍ରଭୁଙ୍କୁ ନେଇ ପାରିଥାନ୍ତ ?"

ନାଆ ଚାହିଁଲା ନାଉରୀ ମୁହଁକୁ । ନାଉରୀ ଚାହିଁଲା ନାଆ ମୁହଁକୁ । କାତ ପଚାରିଲା, "କହୁନ ? ମୋ' କଥା ତ ପୂରା ପାସୋରି ଦେଇଛ ଦି'ଜଣ ? ବାମନ, ରାମ, ଲକ୍ଷ୍ମଣ, ରାଧା, ମାଧବ—ମୁଁ ସମସ୍ତଙ୍କୁ ଦେଖିଛି । ମୋ' ଆଖି ପବିତ୍ର କରିଛି । ରାଧାପ୍ରାଣଙ୍କ ହାତରେ ରହି ମୁଁ ଯମୁନାର ଏ କୂଳ ସେ କୂଳ ହୋଇଛି କେତେଥର । ନାଆର ଏ ପଟରୁ ସେ ପଟକୁ ମତେ ନେଲାବେଳକୁ ମୋ ଦେହରେ ପ୍ରଭୁଙ୍କ ମୟୂରଚୂଳ କେତେଥର ବାଜିଛି ।"

ନାଆ, ନାଉରୀ, କାତ, କିଛିବେଳ ଚୁପ୍ ହୋଇଗଲେ । ରାତି ପାହି ଆସୁଥାଏ । କୁଆଁ ତାରା ଉଙ୍କି ମାରୁଥାଏ ପୂରୁବ ଦଗରେ । ନାଆ ତୁଣ୍ଡ ଖୋଲିଲା, "ନାଉରୀ ! ହଜିଲା ତିନି ଯୁଗର କଥାରେ ରାତି ପାହିଗଲା । ଆଉ ଏ ଚାଲନ୍ତି ଯୁଗ···?"

ନାଉରୀ କହିଲା, "ଏ ଯୁଗ ଆହୁରି ପବିତ୍ରରେ ନାଆ ! ମା' ଲକ୍ଷ୍ମୀ, ମା' ସରସ୍ୱତୀଙ୍କୁ ନେଇ ପ୍ରଭୁ ଏଇ ନରେନ୍ଦ୍ରକୁ ଚନ୍ଦନଯାତ୍ରା କରୁଛନ୍ତି ସବୁ ବର୍ଷ ଏକୋଇଶ ଦିନ । ଆମେ ସମସ୍ତେ ତାଙ୍କ ସେବକଙ୍କ ଗହଣରେ ପ୍ରଭୁଙ୍କୁ ଆଉ ମା' ଦି' ଜଣଙ୍କୁ ବୁଲେଇ ଆଣୁଛେ । ନରେନ୍ଦ୍ର ପାଣି କୃତାର୍ଥ ହେଉଛୁ । ଏସବୁ ଆମ ତିନିଜଣଙ୍କ ଭାଗ୍ୟ···ଏସବୁରେ ଭରି ରହିଛି ଚାରି ଯୁଗର ସମ୍ପର୍କ···ସତ୍ୟ, ତ୍ରେତୟା, ଦ୍ୱାପର, କଳି···ତିନି ଯୁଗ ବିତିଯାଇଛି···ଚାରି ଯୁଗ ରହିଛି ।"

ନାଆ, ନାଉରୀ ଓ କାତ—ଜଗନ୍ନାଥ, ଲକ୍ଷ୍ମୀ ଆଉ ସରସ୍ୱତୀଙ୍କ ଛଡ଼ାଫୁଲ ସାଉଁଟି ପକେଇ ନିଜ ନିଜ ଦି' ହାତରେ ଛାତିରେ ଜାବୁଡ଼ି ଧରିଲେ । ତିନିଙ୍କ ଆଖିରୁ ବହିଯାଉଥିଲା ଧାର ଧାର ଲୁହ ।

ନାଆ ପଚାରିଲା, "ରାତି ପାହିବ, ସକାଳ ହବ, ଦିନ ଗଡ଼ିବ, ପ୍ରଭୁ ପୁଣି ଆସିବେ ସବୁରି ଗହଣରେ । ଆଉ କେତେ ଘଡ଼ି ଅଛିରେ ନାଉରୀ ?"

ନାଉରୀ କହିଲା, "କାଇଁ, ଏ ରାତି ତ ପାହୁନି !"

କାତ କହିଲା, "ରାତି ପାହିବ, ସକାଳ ହବ, ପ୍ରଭୁ ମନ୍ଦିରରୁ ମଣିବିମାନରେ ବିଜେ କରି ଆସିବେ । ଓଃ, ଆଉ କେତେ ଡେରି···!"

ନାଆ, ନାଉରୀ, କାତ ଚାହିଁଲେ । ପାଣି ଚବ ଚବ କରି ନରେନ୍ଦ୍ର କହୁଛି, "ମୁଁ ବି ଚାହିଁଛି ଜଗନ୍ନାଥଙ୍କୁ···ପ୍ରଭୁ କେତେବେଳେ ଆସିବେ ଆଉ ?"

ନରେନ୍ଦ୍ରର ପାଣି ଚହଲି ଉଠୁଥିଲା । ସବୁରି ମନରେ ଗୋଟିଏ କଥା, ପ୍ରଭୁ ପୁଣି ଆସିବେ···ଚାପରେ ବିଜେ ହେବେ । ମା' ଲକ୍ଷ୍ମୀ ନରେନ୍ଦ୍ର ପାଣି ଆଉ ଫୁଲ ପ୍ରଭୁଙ୍କ ଉପରକୁ ବେଳ ଉଣ୍ଡି ଫିଙ୍ଗି ଦେବେ । ପ୍ରଭୁଙ୍କ ଓଠରୁ ଝରିପଡ଼ିବ ଅମୃତ ହସ । ଭକ୍ତଗଣ ଚକଡ଼ୋଳାକୁ ଦେଖି କୃତାର୍ଥ ହେବେ ଏ ଦେବଲୋକ ଦୃଶ୍ୟ ।

ସେମାନେ ସମସ୍ତେ ପ୍ରଭୁଙ୍କ ବାଟ ଚାହିଁ ରହିଥିଲେ ।

ନାଆ···

ନାଆ···ନାଉରୀ,···

ନାଆ···ନାଉରୀ···କାତ

ନାଆ···ନାଉରୀ···କାତ···ନରେନ୍ଦ୍ର ।





ସବୁ ଯୁଗରେ ଦେବତାଙ୍କ ସହ ରାକ୍ଷସ ଅଛନ୍ତି। ଦେବତା ଚାହାନ୍ତି, ପୀଠ ରହୁ, ମନ୍ଦିର ରହୁ, ପାଠାଧୀଶ ରହନ୍ତୁ। କଳାପାହାଡ଼ମାନେ ଚାହାନ୍ତି ଏ ମନ୍ଦିର ଭାଙ୍ଗିପଡୁ, ଉଜୁଡ଼ିଯାଉ। ସେବକମାନେ ସେବ୍ୟଙ୍କର ତିଳେହେଲେ ଅମଙ୍ଗଳ ଚାହାନ୍ତିନି। କଳ୍ପନାରେ ବି ଭାବନ୍ତିନି ଏ ପୀଠର ଦୁରବସ୍ଥା।

ଲୋକନାଥ ସିଂହାଣୀ ଚିନ୍ତାଗ୍ରସ୍ତ ହୋଇ ପଡ଼ିଲେ । ସୁମନ୍ତ ଦେହରେ ଖଇ ଫୁଟୁଛି । ସବୁଦିନ ପରି ସେ ଆଜି ହସି ହସି ଦେଉଳରୁ ଫେରିନି । ଜରରେ କମ୍ପି କମ୍ପି ସେ ଫେରିଛି ବଡ଼ ଦେଉଳରୁ । ତା' ଗୋଡ଼ହାତ ଘୋଳାବନ୍ଧାରେ ଚିଡ଼ି ପଡ଼ୁଥାଏ । ମୁଣ୍ଡର ଖପୁରି ଯେମିତି କିଏ ଜଣେ ଛାଡ଼ି ପକାଉଛି । ଓଃ କି କଷ୍ଟ ! ସୁମନ୍ତ ଦେଉଳ ଦୁଆରୁ ନିଜକୁ ଘୋଷାରି ଘୋଷାରି ଆଣି ଶୋଇବା ଘର ଭିତରେ ଚିତ୍‌କାତ ହୋଇ ପଡ଼ିଗଲା । ତାକୁ ଘୂରିଅଡ଼ ଅନ୍ଧାର ଦିଶିଲା । ଏଇଭଳି ଯନ୍ତ୍ରଣା ଜର୍ଜରିତ କଷ୍ଟକ୍ଲିଷ୍ଟ ମନରେ କେବଳ ଗୋଟିଏ ଚିନ୍ତା, ଏମିତି ଦେହ ହେଲେ ଆସନ୍ତାକାଲି ମଙ୍ଗଳ ଆଳତି ଦେଖିବାକୁ ସେ ଯାଇ ପାରିବନି । ଲୋକନାଥ ସିଂହାଣୀ ଝିଅ ଦେହରେ ହାତମାରି ବଇଦପାଖୁ ଦଉଡ଼ିଲେ ।

ସେତେବେଳକୁ ରାତି କେତେ ହେବ କେଜାଣି । ସୁମନ୍ତର ନିଦ ଟିକେ ପତଳା ହୋଇ ଆସିବା ଅବସ୍ଥାରେ ସେ ସାମାନ୍ୟ ଅସ୍ପଷ୍ଟ ସ୍ୱରରେ ଶୁଣିଲା, "ସୁମ ! ସୁମ !"

ଘରେ ବାପା ଡାକନ୍ତି ମଣ୍ଟା ! ବୋଉ ଡାକେ 'ସୁମ' । ହେଲେ, ଏ ତ ବୋଉ ପାଟି ନୁହେଁ । ପୁରୁଷ ପାଟି ! ସୁମନ୍ତ ଆଖି ମେଲିଲା ଧୀରେ ଧୀରେ । ଗୃହିଁଲା, କେହି କୁଆଡ଼େ ନାହାନ୍ତି । ମାତ୍ର ସେମିତି ତ ଡାକ ଶୁଭୁଛି, "ସୁମ ! ସୁମ !"

ସେ ଡରଗଲା, ଦୁଆର ମେଲା ହୋଇଛି । ଦୁଆର ପାଖରେ ବୋଉ ନାହିଁ । ତେବେ କିଏ ଡାକୁଛି ?

—'ସୁମ'

ସୁମନ୍ତ ଦେହରୁ ଗୋଟାଏ ଝାଳ ବୋହିଗଲା । ସେ ଦେଖିଲା, ତା' ଦେହରୁ ଗୋଟାଏ ଛାଇ ବାହାରିଲା । ପ୍ରଥମେ ଝାପ୍‌ସା-ପତଳା, ତା'ପରେ ଆଉ ଟିକେ ବହଳ, ପୁଣି ଆହୁରି ବହଳ । ଶେଷରେ କଳାହାଣ୍ଡିଆ ମେଘର ଛାଇ ଆଉ ଶେଷରେ ସେଇ ଛାଇ ଭିତରୁ ଗୋଟାଏ ଅଘଟଣ ବିକଟାଳ ରୂପ ଆଉ ତା'ର ସ୍ୱର, "ସୁମ ! ମୁଁ ଡାକୁଛି ।"

ସେ ବରଡ଼ାପତ୍ରର ପରି ଥରିବାକୁ ଲାଗିଲା । ପାରୁ ପର୍ଯ୍ୟନ୍ତ ଚିତ୍କାର କଲା । ମାତ୍ର ଶବ୍ଦ ବାହାରିଲାନି । ସେଇ କଳାମଣିଷଟା କହିଲା, "ଡରନା, ମୁଁ ଡାକୁଥିଲି ସବୁକଥା ପରେ କହିବି । ମଙ୍ଗଳ ଆଳତି ବେଳ ହେଲାଣି । ମୃଦୁଲି, ମେକାପ, ଖୁଣ୍ଟିଆ, ଭିତରଚ୍ଛା, ଅଖଣ୍ଡ ସବୁ ଆସିଗଲେଣି । ଜଗମୋହନରେ ବାଜା ବାଜିଲାଣି । ଯିବୁନୁ ଆଳତି ଦେଖିବାକୁ ? ମୁଁ ଗୃହିଁଲେ ତତେ ଆଳତିକୁ ଘେନିଯିବି ।"

ସୁମନ୍ତ ତା' ମନର ସବୁକଥାକୁ ପଛରେ ପକେଇ କହିଲା, "ହଁ, ମୁଁ ଆଳତି ଦର୍ଶନକୁ ଯିବି । ତୁମେ ମତେ ନେଇ ଗୃଲ..."

ସେ କହିଲା, "ମୁଁ ଓହ୍ଲେଇ ଯାଉଛି ତୋ' ଦେହରୁ । ମୁଁ ଓହ୍ଲେଇଗଲେ ତୋ' ଓଜନିଆ ଦେହଟା ଫୁଲ ହୋଇଯିବ । ତୁ ଆଳତି ଦେଖିପାରିବୁ । କାଲିଠୁ ଦେଉଳରୁ ମୁଁ ତୋ' ଦେହରେ ପଶିଛି । ହେଇ ଓହ୍ଲେଇଲି । ତୁ ଯା' ବେଗି ବେଗି ଗାଧୋଇ ପଡ଼ିବୁ...ଦୁଆର ଖୋଲିଲାଣି । ସାବଧାନ, ଏକଥା ଯେମିତି କେହି ନ ଜାଣନ୍ତି ।"

ସୁମନ୍ତ ଖଟତଳକୁ ଗୋଡ଼ ବଢ଼େଇଲା । ଏକଣା ଘରୁ ନନ୍ଦ ମଳମଳ ଭଙ୍ଗାସ୍ୱରରେ ସୁମନ୍ତ ବୋଉ ପଗ୍ଭରିଲେ, "ଆଲେ ମା', ଦେହ କେମିତି ଅଛି ?"

—"ସବୁ ଭଲ ହୋଇଯାଇଛି ବୋଉ, ମୁଁ ମଙ୍ଗଳ ଆଳତି ବାହାରିଲି ।"

ମଙ୍ଗଳ ଆଳତିରୁ ସେ ପୁଣି କର୍ମି କର୍ମି ଫେରିଲା । ଗୋଡ଼ ତଳେ ସ୍ଥିର ରହୁନି । ପଡ଼ିଶାଘର ମାଁ ମାଉସୀ ଧରି ନ ପକେଇଥିଲେ ସେ ବଡ଼ଦାଣ୍ଡରେ ଗଛ

କାଟିଲା ପରି ପଡ଼ିଥାନ୍ତା । ସିଂହାସ୍ୱାମୀ ଗର୍ଜିଲେ, "ଏଇ ଜିଦ ଯୋଗୁଁ ତୋର ଏ ଅବସ୍ଥା । ମୁଁ ମନା କରୁଛି, ତୁ ଯା'ନା । ଏମିତି ଭଙ୍ଗାଦେହରେ କେଉଁଠି ଯାଏ ? ଛି, ଛି, ଅମାନିଆଁ ହେଲେ ଏମିତି ଭୋଗିବାକୁ ପଡ଼େ ।"

ସୁମନ୍ତର ଚେତା ଶେଯ ଉପରେ ବୁଡ଼ିଗଲା । ଖାଁ, ଖାଁ, ଖସ୍‌ବେଲେ ତା'ର କାନକୁ ପୁଣି ସେଇ ଅସ୍ପଷ୍ଟ ସ୍ୱର ଭାସିଦେଲା, "ସୁମ ! ସୁମ ! ସନ୍ଧ୍ୟାଲଗ୍ନ ଯିବୁନି ?"

—"ବାପା ବାଡ଼ିଧରି ଦାଣ୍ଡ ଓଗାଳି ବସିବେ । ବୋଉ ବାଳିଆ ପାଟି ମେଲିବ । ମୋ ଦେହରେ ତ ଖଇ ଫୁଟୁଛି···ଓଃ···"

—"ମୁଁ ସବୁ ଠିକ୍ କରିଦେବି । ବେଳ ଗଡ଼ୁ ଗଡ଼ୁ ମୁଁ ଓହ୍ଲେଇଯିବି ତୋ' ଦେହରୁ । ମୁଁ ତୋ' ଦେହକୁ ପୁଣି ଫୁଲ କରିଦେବି । ହେଲେ, ତତେ ମୋ କଥା ରଖିବାକୁ ପଡ଼ିବ ।"

ସେ ଭୟଙ୍କର ଲୋକଟାକୁ ସୁମନ୍ତ ବୁଝିପାରୁ ନଥାଏ । ଡରି ଡରି ସେ ପଚାରିଲା, "କି କଥା ?"

ଦାନ୍ତ ନିକୁଟି ସେ କହିଲା, "ସନ୍ଧ୍ୟାଲଗ୍ନ ପରେ ପରେ ମୁଁ ତୋ' ଦେହରେ ପଶିଯିବି । ତୁ ସାତ ପାହାଚରେ ଜ୍ଞାନ ହଜେଇ ବସିବୁ । ସେ ଧୂପ ପରେ ମୁଁ ତୋ' ଦେହରୁ ପୁଣି ଓହ୍ଲେଇଯିବି । ତୁ ତା'ପରେ ବଡ଼ସିଂହାର ଦେଖିବୁ । ତୋର ତ ବଡ଼ସିଂହାର ବେଶରେ କେତେ ଲୋଭ ! ହେଲେ ସାବଧାନ, ଦଣ୍ଡ ପକ୍ଷାଳ ଭୋଗ ଆଉ କଦଳୀଭଜା ଖାଇବୁନି ।"

—କାହିଁକି ?

—"ପରେ କହିବି, ଯଦି ଭୋଗ ଖାଇବୁ, ତେବେ ତୋ' ଦେହରେ ମାହାଙ୍କ ବଳେ କରିବେ, ମୋର ଆଉ ଗୁରି ରହିବନି । ପରେ ସବୁ କହିବି । ବଡ଼ସିଂହାର ପରେ ତୋ' ଦେହରେ ପୁଣି ପଶିବି । ତୋତେ ଲୋକ ଟେକିଆଣି ଘରେ ଛାଡ଼ିବେ । ମୁଁ ପୁଣି ସେଇ ବାଉଅଧରେ ତୋ' ସାଙ୍ଗେ କଥା ହେବି । ଏକଥା ଯେମିତି କେହି ଜାଣିବେନି । ବୁଝିଲୁ ? ଜାଣିଲେ କଥା ସରିଯିବ—ନେଡ଼ିଗୁଡ଼ କହୁଣୀ ଧରିବ, ବୁଝିଲୁ ?"

ଓଃ ! ଲୋକଟା କି ଭୟଙ୍କର । ତା' କଥାଗୁଡ଼ା କେମିତି ଟାଣଟାଣ । ଧମକଟା ଯେମିତି କ୍ଷୁରଧାର । ସତକୁ ସତ ସେଇଆ ହେଲା । ସମସ୍ତେ କହିଲେ ମାନନାମୀ ନଥିଲେ ଆଜି ସୁମ୍ ବଞ୍ଚି ନଥାନ୍ତା । ଜୟବିଜୟ ଦ୍ୱାର ପାଖରେ ସନ୍ଧ୍ୟା ଆଳତି ଦେଖିବାବେଳେ ସେଇଠି ଟେଙ୍ଗାବୁଢ଼ା ତା' କଥା ସରିଯାଇଥାନ୍ତା ।

ସବୁ ଦେହ ଦୁଃଖରେ ସୁମନ୍ତର ସେଇ ଲୋକଟା କଥା ମନେ ପଡ଼ୁଥାଏ । କିଏ ଏ ଲୋକ, ତା'ର ଦେହରୁ ବାହାରୁଛି ଓ ତା'ର ଦେହରେ ପଶିଯାଉଛି । ତା'ର ପୁଣି କି କଥା ସୁମନ୍ତକୁ ରଖିବାକୁ ପଡ଼ିବ । ଏ କାଳ କେଉଁଠୁ ଆସିଲା ? ହେ ପ୍ରଭୁ କଳାଠାକୁର, ତୁମେ ରକ୍ଷାକର । ବଡ଼ସିଂହାର ପଖାଳ ଆଉ କଦଳୀ ଭଜାରେ ତା'ର କେତେ ଲୋଭ ! ବାପାଙ୍କର ଯେଉଁଦିନ ପାଳିଥାଏ, ସେଦିନ ପିଲାଟିଦିନୁ ସେ ଅଳିକରି ପହୁଡ଼ ଆଳତି ପରେ ବାପାଙ୍କ ବାଟକୁ ସେଇ ଲୋଭରେ ଚାହିଁଥାଏ । ଆଜି ବି ପୂଜାପଣ୍ଡା ଗୋବିନ୍ଦ ମଉସା ହସି ହସି କଦଳୀଭଜା ଯେତେବେଳେ ତା' ହାତକୁ ବଢ଼େଇ କହିଲେ, "କିଲେ ସୁମନ୍ତ, ଏମିତି କାହିଁକି ଦିଶୁଛୁ ? ତୋ' ଦେହ ଭଲ ନାହିଁକି ? ନେ, ନେ, ପଖାଳଓଳି ଆଉ ଭଜା ଖାଇଦେ । ତୋର ତ ଏଇଥିରେ ଲୋଭ, ସେଇଥିପାଇଁ ବୋଧେ ଠିଆ ହୋଇଛୁ ।"

ସୁମନ୍ତ ତାଙ୍କ ହାତରୁ ପଖାଳଓଳି ଆଉ କଦଳୀଭଜା ଆଣିଲା ସିନା, ଖାଇପାରିଲାନି । ସେଇ କଳାଭୂତ ଡରରେ । ପ୍ରସାଦ ଖାଇବାକୁ ପୁଣି ମନା କରିଛି । ହେ ପ୍ରଭୁ, ଏ କି ଲୀଳାରେ ମଣିଷ ଆଜି ପଡ଼ୁଛି । ପଖାଳଓଳି ଆଉ ଭଜା ସେ ତଳଖଞ୍ଜା ମନ୍ଦିରର ଠଣାରେ ସାଇତିଲା ।

ସାଇଁ ସାଇଁ କଣା ଗର୍ଜନ ଯାଏ ତାକୁ ସେଦିନ କିନ୍ତୁ ନିଦ ହେଲାନି । ସେ ତା' ଆଗରେ ଥିବା ଫଟୋରେ ଜଗନ୍ନାଥଙ୍କ ମୁହଁକୁ ଚାହିଁଥାଏ । ପଡ଼ିଶାଘର ଅଗଣା ଆଲୁଅରୁ ଝଲକାଏ ପଡ଼ୁଥାଏ, ସେ ଫଟୋ ଉପରେ । କଳାମୁହଁ ଯେମିତି ତା' ଆଡ଼କୁ ଚାହିଁ ହସୁଛନ୍ତି ।

—"ସୁମ" !

ସେ ଚମକିପଡ଼ି ଦେଖ ପକେଇଲା ନିଜ ଖଟ ଉପରେ । ଚାହିଁ ଦେଖିଲା ସେଇ ଲୋକଟା ! ଏଥର କିନ୍ତୁ ଆହୁରି ବିକଟାଳ ଦିଶୁଛି । ମୁହଁରେ ଦେହରେ ଗାଢ଼ କଳାରଙ୍ଗ ଯେମିତି ବୋଳି ହୋଇଛି । ମୁଣ୍ଡବାଳଗୁଡ଼ାକ ଠିଆ ଠିଆ । କାନ ଦି'ଟା ଯେମିତି ଦି'ଟା କୁଲା । ନଖଗୁଡ଼ାକ ଯାନ କୋଦାଳ ଭଳିଆ ଆକୃତି । ମୁହଁଟା ପୁଲା ପୁଲା ମାଟି ଲଦା ହେଲାଭଳି ଫୁଲିଲା ଫୁଲିଲା । ଦେହ ଗୋଟାକଯାକ ଯେମିତି କାଣିଚୁଣି କିଏ ଆବଡ଼ା ଖାବଡ଼ା କରି ଦେଇଛି ।

ପଲଙ୍କ ଉପରେ ସେ ଆଗରୁ ଦୂରରେ ବସୁଥିଲା । ଏଥର ପାଖକୁ ଲାଗି ଆସିଲା । ଟିକିଏ ଗୁପ୍ତ ସ୍ୱରରେ ତା'କୁ କହିଲା, "କାଲି ଗୁରୁବାର । ଲକ୍ଷ୍ମୀ ଯାଆନ୍ତାଣୀ ସିଂହାସନ ଉପରୁ ବିଜେ କରିବେ ମାଜଣାମଣ୍ଡପକୁ । ତୁ କାଲି ମାଜଣାମଣ୍ଡପକୁ ଯିବୁ । ଯେଉଁ ଲକ୍ଷ୍ମୀସ୍ତୋତ୍ର ତତେ ବାପା ଶିଖେଇଛନ୍ତି, ତାକୁ ପଢ଼ିବୁ । ଲକ୍ଷ୍ମୀ ବିଜେ କରିବା ସାଙ୍ଗେ ସାଙ୍ଗେ ମହାଜନେ ଯେତେବେଳେ ଦକ୍ଷିଣିଘରକୁ ଠାକୁର ଆଣିବାକୁ ଯାଇଥିବେ, ତୁ ମନ୍ତ୍ରପଢ଼ି ସାରି ଲକ୍ଷ୍ମୀଙ୍କ ମୁଣ୍ଡକୁ ହାତ ବଢ଼େଇବୁ ।

—"କାହିଁକି ?"

—"କହୁଛି ଶୁଣ । ହାତ ବଢ଼େଇବା ମାତ୍ରେ ଦେଖିବୁ ମା'ଙ୍କ ମୁଣ୍ଡରେ କଳାବାଳ ଲହଡ଼ି ଖେଳୁଛି । ସେଥିରୁ ଗୋଟିଏ ହାତପଇଠ କରିବୁ ।"

—"ମା'ଙ୍କ ମୁଣ୍ଡବାଳ କ'ଣ ହେବ ?"

—"ସେ କଥା ପରେ କହିବି । ଆଗ ଏତିକି କାମ ହାସଲ କର । ତା'ପରେ ପଛକଥା । ମା'ଙ୍କ ମୁଣ୍ଡର ଗୋଟାଏ ବାଳ ଦରକାର । ଆଉ ସବୁ ଯୋଗାଡ଼ ହଉଛି । ସାବଧାନ, ଏକଥା ଯେମିତି କେହି ନ ଜାଣନ୍ତି । କଥା ଯଦି ଜଣାପଡ଼ିବ, ସବୁ ଭଣ୍ଡୁର ହୋଇଯିବ । ହଁ, ସେଇ ବାଳକୁ କାନରେ ଗଣ୍ଠି ପକେଇ ବାନ୍ଧି ଘରକୁ ଆଣିବୁ । କାଲି ରାତିରେ ଏତିକିବେଳେ ମତେ ବୁଝେଇଦେବୁ । ବୁଝିଲୁ ?"

ମାଜଣାମଣ୍ଡପ ବି ଯୋଗକୁ ସେଦିନ ଖାଲି ଥିଲା । ସୁମତି ଲକ୍ଷ୍ମୀଙ୍କସ୍ତୋତ୍ର ପଢ଼ିବାମାତ୍ରେ ମା'ଙ୍କ ବଧୂଳନ୍ନୀ ଓଠରେ ହସ ଫୁଟିଉଠିଲା । ସ୍ତୋତ୍ର ପଢ଼ିସାରି ସେ ଚୁରିଆଡ଼କୁ ଚାହିଁ ମା'ଙ୍କ ମୁଣ୍ଡକୁ ହାତ ବଢ଼େଇଲା । ଏ କ'ଣ ? ମା' ଘୁଞ୍ଚିଗଲେ ଯେ ! ସେଇ ମାଜଣାମଣ୍ଡପ ଉପରେ ଥିବା ଗୃହ ଆଲୁ ଗୋଟିଏ ନୀଳରଙ୍ଗର ଆଲୁଅଧାର ମା'ଙ୍କ ମୁହଁକୁ ଲାବଣ୍ୟରେ ମଣ୍ଡିଦେଲା । ମା' ହସି ହସି କହିଲେ, "ସୁମତି ! ଏଇ ମୁଣ୍ଡବାଳ ଯାହାପାଇଁ ନଉଛୁ, ସେ କ'ଣ କରିବ ଜାଣିଛୁ ତ ?"

ସୁମତି ଜୀବନରେ ପ୍ରଥମ ଥର ପାଇଁ ମା'ଙ୍କ ତୁଣ୍ଡରୁ ସିଧାସଳଖ କଥା ଶୁଣିଲା । ସେ ଚମକିପଡ଼ିଲା କହିଲା, "ମା'…ମୁଁ କିଛି ଜାଣିନି ।"

ମା' କହିଲେ, "ଏ ମୁଣ୍ଡବାଳ ଯାହାର ଯିବ, ସେ ସ୍ଥିର ହୋଇ ରହିପାରିବନି । ମତେ ଦେଉଳ ଛାଡ଼ି ଯିବାକୁ ହେବ । ମୁଁ ଚାଲିଗଲେ ଏ ଦେଉଳ ଭୁଷୁଡ଼ି ପଡ଼ିବ ।..."

—"କିନ୍ତୁ ଏଥିରେ ତା'ର କ'ଣ ଲାଭ ହେବ ମା ?"

—"କଳାପାହାଡ଼ର କ'ଣ ଲାଭ ହେଲା, ଏ ମନ୍ଦିରର କେତେ କେତେ ମୂର୍ତ୍ତିକୁ ଖଣ୍ଡିଆ କରିଦେବାରେ ?"

—"କିନ୍ତୁ ଏ କ'ଣ ?"

—"ସେଇ କଳାପାହାଡ଼ର ଭୂତ । ଅତୃପ୍ତ-ଆତ୍ମା ଏବେ ବି ବୁଲୁଛି ମନ୍ଦିର ଚାରିପଟେ । ମୁଁ ଥିବାଯାଏ କିଛି କରିପାରୁନି । ମୁଁ ଚାଲିଗଲେ ବାଟ ସଫା ହୋଇଯିବ । ...ହଉ ଯାହା ତାଙ୍କର ଇଚ୍ଛା...ନେ । ଏ ମୋ ମୁଣ୍ଡର ବାଳ ।"

ଥରିଲା ହାତରେ ସୁମତି ମୁଣ୍ଡର ବାଳ ମା'ଙ୍କ ହାତରୁ ଗ୍ରହଣ କଲା ।

ଘରେ ପହଞ୍ଚି ସେ କ'ଣ ଦି'ଟା ଖାଇଦେଇ ଯେତେବେଳେ ପଲଙ୍କ ଉପରକୁ ଗଲା, ସେତେବେଳେ ସେ ଖାଲି ଭାବିଯାଉଥିଲା ଏ ସବୁ ଘଟଣା । ଭାବିଲା, କାହା ଆଗରେ ଏ ସବୁ ଖୋଲିକରି କହିବ । ଭାବୁ ଭାବୁ କେତେବେଳେ ନିଦ ହୋଇଗଲା ସେ ଜାଣିପାରିଲାନି ।

ରୁକ୍ମିଣୀ ମୁହଁ ଶୁଖେଇ ବସିପଡ଼ିଲା ତା' ପାଖରେ, କହିଲା, "ସୁମି ! ତୋର ମୋ କଥା ମନେ ଅଛି ? ମତେ ଚିହ୍ନିଲୁ ?"

—"ତତେ ଚିହ୍ନିବିନି ରୁକି ! ତୁ କୁଆଡ଼େ ଥିଲୁ ଆଜିଯାଏ ? ଶାଶୂ ଘରେ ପାଦ ଦଉ ଦଉ ତୋର କ'ଣ ଏମିତି ହେଲା ରୁକି ? ତତେ କ'ଣ ସତରେ ସେମାନେ..."

—"ଦେଖ, ମୋ କଥା ପରେ ଜାଣିବୁ । ମତେ ପ୍ରକୃତରେ କେହି ବିଷ ଦେଇନି । ତୋ ଦଶା ମୋତେ ଘୋଟିଲା ସୁମି । କାଳପୁରୁଷ ତୋତେ ଏଇନେ ଯେମିତି ଘାଣ୍ଟୁଛି, ମତେ ସେମିତି ଘାଣ୍ଟି ପକେଇଲା । ସେ ଜାଣିଛି ସାତୋଟି ଅଭିଆଡ଼ୀ ଝିଅ ହାତରେ ମା'ଙ୍କର ନଖ, ଲୁଗାକାନି, ବାଳ, ଲାଗିଫୁଲ, ଚନ୍ଦନ,

ଆସ୍ଥାନ ଧୂଳି ଆଉ ଗାଈଧୁଆପାଣି ନେଲେ ତା' ହାତରେ ଯାହା ଇଚ୍ଛା, ତା' ହୋଇପାରିବ । ପାଞ୍ଚୋଟି ଜିନିଷ ସେ ହାସଲ କରିପାରିଥିଲି ମୋ ପାଖୁ ଆସିଲାବେଳକୁ । ମୋଠୁଁ ହାସଲ କଲା ମା'ଙ୍କ ଆସ୍ଥାନ ଧୂଳି । ଖାଲି ବାକିଥିଲା ମା'ଙ୍କ ମୁଣ୍ଡର କେଶ । ତୋ ଦ୍ୱାରା ପୂରଣ ହୋଇଗଲା ।"

ସୁମତି ପଚାରିଲା, "ଏ ସବୁ ନେଲେ କ'ଣ ହେବ ?"

—"ତନ୍ତ୍ର ସାଧନା ଫଳରେ ମା' ଲକ୍ଷ୍ମୀ ବିଦାୟ ନେବେ ବଉଳ ଦେଉଳରୁ । ମା' ବିଦାୟ ନେବାମାତ୍ରେ ଦେଉଳ ଅଜାଡ଼ି ହୋଇପଡ଼ିବ । ନୀଳଚକ୍ର ନୀଳ ଦରିଆରେ ବୁଡ଼ିଯିବ । ଚନ୍ଦ୍ରବଂଶୀ ରହିବନି ।"

—"ତୁ କେମିତି ବୁଲି ଏଥିରେ ସାମିଲ ହେଲୁ ?"

—"ମୋ କଥା କହୁଚି ଶୁଣ । ତୋର ଯେମିତି ହଅଁଙ୍କର ମଙ୍ଗଳ ଆଳତି ଓ ସନ୍ଧ୍ୟାଳତି ଦେଖିବାରେ ଲୋଭ, ମୋର ସେମିତି ଚନ୍ଦନଲାଗିରେ ଲୋଭ । ମତେ ଏମିତି ଜରରେ ପାଇଁଲି । ତା'ପରେ ମୋ ଶାଶୁଘରୁ ଏଠିକି ନେଇଆସିଲି । ଚନ୍ଦନ ଲାଗି ଦେଖିବାକୁ ମୋ ସାଙ୍ଗରେ ସର୍ତ୍ତକଲା ମା'ଙ୍କ ଆସ୍ଥାନଧୂଳି ପାଇଁ । ମତେ କେତେ କ'ଣ ଲୋଭ ଦେଖାଇଲା । ମୁଁ ଭୁଲିଗଲି । ତୋ ଭଳି ମାଳଣୀମଣ୍ଡପ ଆସ୍ଥାନତଳୁ ଧୂଳି ଆଣିଲି ।"

—"ତାପରେ ?"

—"ମୋଠୁଁ ଯେତେବେଳେ ଧୂଳି ନେଇଯାଉଥିଲା ଠୋ ଠୋ ହସି ମତେ ଧୂଳିନେବାର ଉଦ୍ଦେଶ୍ୟ କହିଦେଲା । ମୁଁ କି ପାପ କଲି ବୋଲି ମୁଣ୍ଡ ପିଟିଦେଲି ।"

—"ତା'ପରେ ?"

—"ଶାଶୁଘରକୁ ଯାଇ ବିଷ ଖାଇଦେଲି । ଆତ୍ମହତ୍ୟାରେ ପାପ ହୋଇ ଏମିତି ବାଆ ବତାସରେ ବୁଲୁଚି । ମା'ଙ୍କ ପାଖୁ ପ୍ରତି ଗୁରୁବାର ମାଳଣୀମଣ୍ଡପକୁ ଯାଇ ମୁଣ୍ଡ ପିଟି ଦେଉଚି । ସେଦିନ ମାଳଣୀମଣ୍ଡପରେ ପହଞ୍ଚି ଦେଖିଲି ତୁ ବାଳ ଆଣିଲୁ । ମା' ତତେ ଯାହା କହିଲେ ଶୁଣିଲୁ ତ ?"

ସୁମତି ମୁଣ୍ଡ ହଲାଇଲା । ବିକଳ ହୋଇ କହିଲା, "ତୁ ମତେ ବୁଦ୍ଧି ଦେଉଚୁ, ଏ ଦେଉଳ, ଏ ହଅଁ କେମିତି ରକ୍ଷା ହେବେ ।"

ସୁମତୀର ଆଖିରେ ଅସର୍ ଅସର୍ ଲୁହ । ରୁକ୍ମିଣୀ କହୁଲା, "ଧୈର୍ଯ୍ୟଧର ! ମୁଁ ତୋ ପାଖରେ ଥିବାଯାଏ, ସେ ଆସି ପାରିବେନି । ମୁଁ ତାକୁ କଞ୍ଚା ଖାଇଯିବି । ମୋ ସାଙ୍ଗରେ ଆ । ତୁ ମତେ ଦେଖିପାରିବୁନି । ଦକ୍ଷିଣଦ୍ୱାର ଗୁମୁଟ ଦେଇ ଆମେ ପଶିଯିବା ମା' ବିମଳାଙ୍କ ମନ୍ଦିର ଜଗମୋହନକୁ । ବଡ଼ସିଂହଦ୍ୱାର ଏବେ ସରିବା ସରିବା ହେଉଛି । ପହୁଡ଼ ଆଗରୁ ଆମେ ମନ୍ଦିର ଭିତରେ ପଶିଯିବା । ବିମଳାଙ୍କ ଜଗମୋହନରେ ସବୁଦିନେ ମା'ଙ୍କୁ ମିଶେଇ ସାତଚଣ୍ଡୀ ଏକାଠି ହୁଅନ୍ତି । ଅଲମଚଣ୍ଡୀ, ଦକ୍ଷିଣାକାଳୀ, ଭୁବନେଶ୍ୱରୀ, ମଙ୍ଗଳା, ଶୀତଳା ଆଉ ବେଡ଼ାକାଳୀ । ତୁ କାହାକୁ ଦେଖିପାରିବୁନି । ମତେ ବି ଦେଖି ପାରିବୁନି । ତୁ ବିକଳ ପ୍ରାର୍ଥନା କରିବୁ ଏଇ ସାତଚଣ୍ଡୀଙ୍କୁ, ସେ ରକ୍ଷା କରିବେ । ବୁଦ୍ଧି ବତେଇଦେବେ । ଡେରି କରନା, ମୁଁ ତୋ ଆଗେ ଆଗେ ଯାଉଛି । ଦାଣ୍ଡେ ସାଙ୍ଗେ ଆ, ମୋ ପଛେ ପଛେ । ଡେରି କରନା । ଯାତ ମା' ଏକାଠି ବସନ୍ତି ମୋଟେ ଅଧଘଣ୍ଟାଏ । ଆ-ଆ-ଡେରି କରନା···

ସୁମତୀ ମନ୍ତ୍ରମୁଗ୍ଧ ହୋଇ ଗୃହିଣୀ ବଡ଼ଦେଉଳକୁ ।

ରୁକ୍ମିଣୀ କହିବାମତେ ସେ ଲୁହଭରା ଆଖିରେ ବିକଳ ନିବେଦନ କଲା ସାହାଯ୍ୟ କରିବାକୁ । ମା' ବିମଳାଙ୍କୁ କିଏ ଜଣେ କହୁଲେ, "ବିମଳା, ଲୋକ ବିପଦରେ ପଡ଼ିଲେ ତୋ ପାଖକୁ ଧାଇଁ ଆସନ୍ତି । କାହାରିକୁ ତୁ ଫେରାଇ ଦେଉନା ଖାଲି ହାତରେ । ଆଉ ସୁମିର ଏ ପ୍ରାର୍ଥନା···"

ଗୋଟାଏ ଅଟ୍ଟହାସ୍ୟରେ ସୁମିର କାନ ଫାଟିଗଲା; "ଶୁମ୍ଭ, ନିଶୁମ୍ଭ, ମହିଷା ଏମିତି ଉତ୍ପାତ ହୋଇ ମୋରି ହାତରେ ଶେଷ ହେଲେ । ବ'ଠାକୁରଙ୍କ ଛଅଛଅ ଜଣ ଭକ୍ତଙ୍କୁ ଖାଇଦେଲାଣି । ସେ ଜାଣିଛି, ଏଇ ଭକ୍ତମାନଙ୍କ ପାଇଁ ମା' ଲକ୍ଷ୍ମୀ ସବୁ ଅଜାଡ଼ି ଦିଏ ଆଗପଛ ନ ବିଚାରି । ବେଶ୍ ଏଥର ସେ ମତେ ଦେଖିବ । କେତେ ତାନ୍ତ୍ରିକ ଏଠୁଁ ବିଦାୟ ନେଲେଣି । ମନେ ନାହିଁ ଭୁବନେଶ୍ୱରୀ, ତୁମ ତାନ୍ତ୍ରିକ ହାର ମାନି ତୁମକୁ ଏଇଠି ଥାପନା କରିଗୃହିଲଗଲା । ହଉ ଠିକ୍ ଅଛି । ମା' ସୁମି ମୋ ପାଖୁ ଆ । ଅନ୍ଧାର ପାଖକୁ ଆ । ଆନ୍ଧାର ପାଖକୁ । ଆନ୍ଧାର··· ଆନ୍ଧାର ।"

ସୁମତୀ ମୁଆଡ଼େ ଶବ୍ଦ ଶୁଣୁଛି, ସିଆଡ଼କୁ ନିଜ ଆଖିରୁ ଲୁହ ପୋଛୁ ପୋଛୁ ଆଗେଇଲା । ତା'ପରେ ମା' ତା' କାନରେ କହୁଲେ, "ସୁମି······"

ସିଂହଦ୍ୱାରବାଟେ ଘରଆଡ଼କୁ ମୋହିଁଲାବେଳକୁ ସୁମି ଗୃହିଁଲା ସିନ୍ଦୂରା ଫାଟି ଆସୁଛି । ବୁକର ସ୍ୱର ସେ ବେଶ୍ ଶୁଣିପାରିଲା, "ମୁଁ ଯାଉଛି ସୁମି । ଆଉ ରହି ପାରିବିନି । ତତେ ମା' ବିମଳା ଭରସା । ଯେମିତି କହୁଛନ୍ତି, ସେମିତି କରିବୁ ।"

ସୁମି ଶକ୍ତିଶା ହୋଇ କହିଲା, "ଆଉ ଆସିବୁନି ଭୁକ ।"

..."ନା, ଚନ୍ଦନ ଚନ୍ଦନଙ୍କ ଦରିଆ ଉପରେ ମତେ ରହିବାକୁ ପଡ଼ିବ । ମୋ' ହାତରେ ମୋର କିଛି ନାହିଁ । ମୋ' କୃତକର୍ମର ପ୍ରାୟଶ୍ଚିତ୍ତ ମତେ ଭୋଗିବାକୁ ପଡ଼ୁଛି । ଯା' ସବୁ ଠିକ୍ ହୋଇଯିବ । ଚନ୍ଦନ ପରେ ପୁଣି ଆସିବ । ବୁଝିଲୁ ?"

ସେଦିନ ବହୁ ଅଧିକୁ ପୁଣି ସେ କାଳପୁରୁଷ ପହଞ୍ଚିଲା, "ସୁମି, ସୁମି ।"

ସୁମି ଉଠି ବସିଲା । ଦେଖିଲା, ତା' ବେକରେ ହାଡ଼ମାଳ ଲମ୍ବି ଯାଇଛି । ସେ ଗୋଟାଏ କାଠଫରୁଆ ଧରିଛି । କହିଲା, "ନେ, ଏଇଠି ଥୋଇ ଦେ ସେ ବାଳ ।"

ସୁମି କାନ ଫିଟାଇ ଧରେ କାଠଫରୁଆରେ ଥୋଇଦେଲା, ତା'ର କେଶ । କାଳପୁରୁଷ ଫରୁଆମୁହଁ ବନ୍ଦ କଲା ।

ଚନ୍ଦନ ସୁନ୍ଦରର ପତ୍ତା ମିଳିଲାନି । ଲୋକନାଥ ସିଂହାସି ମୁଣ୍ଡରେ ହାତ ଦେଲେ । ଅଭିଆଡ଼ୀ ଝିଅ ଘରୁ କୁଆଡ଼େ ଚାଲିଗଲା । ପୁଣି ପଡ଼ିଲା ଉଠିଲା । ଲୋକଙ୍କ ମୁହଁରେ କେତେ କଥା । ଲୋକନାଥ ସିଂହାସି କାନରେ ହାତ ଦେଇଦେଲେ, ଏମିତ କେତେ କଥା ଶୁଣି ।

ସେଦିନ ପାଲି ଝଟିବାକୁ ନ ଯାଇ ଖଟଶିଆ ଦେଲେ । ପେଟକୁ ଚନ୍ଦନ ହେଲା ଦାନା ଯାଇନି । ନିଦ ତ ଆଖିରେ ନାହିଁ । ଲୁହ ପୋଛୁ ପୋଛୁ କେତେ-ବେଳେ ଅଖି ବୁଜି ହୋଇଯାଇଛି । ସେ ଚମକପଡ଼ି ପଚାରିଲେ, "କିଏ, ମା' ଭୁକ ?"

"...ହଁ ମଉସା, ମୁଁ ଭୁକ । ମୋ' ସାଙ୍ଗରେ ପରେ କଥା ହେବ । ଶୀଘ୍ର ବାହାରିପଡ଼ । ସାଙ୍ଗରେ ଅବକାଶ ଜଳ ଧରିଆ । ବଳିଆପଣ୍ଡା ଆଡ଼େ ଯିବ । ଝଙ୍କା ବର ତଳେ ସମୁଦ୍ର ଆଡ଼କୁ ଗଡ଼ିବ । ମନ୍ଦିରକୁ ଲକ୍ଷ୍ୟ ରଖି ନୈଋତ କୋଣରେ ପହଞ୍ଚିବ । ସମୁଦ୍ର ଲହରୀ ପାଖରେ ସୁମି ଅଚେତ ହୋଇ ପଡ଼ିଛି । ଅବକାଶ ଜଳ ପ୍ରଥମେ ତା' ଦେହସାରା ପକେଇ ଦେବ । ତାକୁ ଆଗ ହଠାତ୍ ଛୁଇଁ ଦବନି ।

ଅବକାଶକାଳ ତା' ଦେହରେ ବାଜିବାମାତ୍ରେ ସେ ଉଠିବ । ତା' ହାତ ଧରି ଧୀରେ ଧୀରେ ଘରକୁ ଆଣିବ । ତା'ଠୁଁ ସବୁକଥା ଶୁଣିବ । ଯା, ଚଞ୍ଚଳ ଯା, ଡେରି କଲେ ଲହରୀ ସୁମିକୁ ନେଇଯିବ ଭିତରକୁ । ପରେ ସୁବିଧା ଦେଖି ମୁଁ ତୁମପାଖକୁ ଆସିବି ମଉସା । ଯା, ଡେରି କରନା ।"

ଲୋକନ ସିଂହାରୀ ଅବକାଶକାଳ କୁଡ଼ୁଆରେ ଧରି ଦଉଡ଼ିଲେ ବାଲିଆ ପଣ୍ଡାଙ୍କୁ ।

ସକାଳୁ ସହରସାରା ରାଷ୍ଟ୍ର ହୋଇଗଲା ସୁମତି ମିଳିବା କଥା । ଲୋକେ କଳୁ ପିମ୍ପୁଡ଼ି ଧାର ହୋଇ ଲାଗିଥିଲେ ରାମଚଣ୍ଡୀଙ୍କ ପାଖକୁ । ଗୋଟାଏ ବିରାଟ କାଳିଆ ରାକ୍ଷସ ଚେହେରାର ଲୋକ ବିକଟାଳ ହସ ମେଲି ମରି ଶୋଇଛି ରାମଚଣ୍ଡୀଙ୍କ ଦୁଆରେ । ତ୍ରିଶୂଳ ପଶିଯାଇଛି ଛାତି ଭିତରେ । ଜିଭ କାମୁଡ଼ି ରକ୍ତବାନ୍ତି କରି ପକେଇଛି ।

ରଜାଙ୍କ ଆଦେଶରେ ସୁମତିକୁ ପାଲିଙ୍କିରେ ନିଆଗଲା ରାମଚଣ୍ଡୀଙ୍କ ପାଖକୁ । ଆଗେ ଆଗେ ଗଜପତି ହାତୀରେ ବିଜେ କରିଥିଲେ ।

ଗଜପତିଙ୍କ ପ୍ରଶ୍ନର ଉତ୍ତରରେ ସୁମତି ଓଢ଼ଣା ଭିତରୁ ମୁଣ୍ଡ ଟୁଙ୍ଗାରି କହିଲା, "ହଁ, ଏଇ ଲୋକ ମଣିମା ।"

ତା' ପରେ ମା'ଙ୍କ ମୁଣ୍ଡବାଳଟି ବଢ଼େଇଲା ସୁମତି ମଣିମାଙ୍କ ହାତକୁ । ମଣିମା ମୁଣ୍ଡରେ ଲଗେଇଲେ । ସୁମତି ହାତ ଠାରି ମଣିମାଙ୍କୁ ଦେଖେଇଦେଲା ସେଇ କାଠଫଟୁଆକୁ, ଯେଉଁଥିରେ ସେ ତା' ମୁଣ୍ଡର ବାଳକୁ ରଖି ବଢ଼େଇଥିଲା, କାଳ-ପିଶାଚକୁ ।

ମଣିମା ଗଜମୁକ୍ତାର ମାଳଟିକୁ ନିଜ ବେକରୁ କାଢ଼ି ସୁମତି ବେକରେ ଲମ୍ବେଇ ଦେଲେ ।

ସୁମତି ଓ ଗଜପତିଙ୍କ ଜୟଧ୍ୱନିରେ ଆକାଶ ପ୍ରକମ୍ପିତ ହେଲା ।

●




ବର୍ତ୍ତମାନ ଦେଉଳର ଦେବଦାସୀ କୋକିଳ ଭିତରେ ଲେଖକ ସୁଶୀଳାକୁ ଦେଖୁଛି। କୋକିଳର ଅଙ୍ଗଭଙ୍ଗୀ, ସ୍ୱର, ଚାଲିଚଳଣୀରେ ସୁଶୀଳାର ସନ୍ଧାନ ପାଉଛି। ସେଇ ସନ୍ଧାନର ଏକ ଜ୍ୱଳନ୍ତ ପ୍ରତିଚ୍ଛବି ଏଇ ରଚନା।

ହଠାତ୍ ସେଇ ମନଛୁଆଁ ଡାକରେ ତା' ନିଦ ଭାଙ୍ଗିଗଲା । ସେ ଚମକିପଡ଼ି ଉଠିବସିଲା ତା' ଶେଯରେ । ନିଦ ମଳ ମଳ ଆଖି ଖୋଲିଲାପରେ ବି ସ୍ୱରଟି ତାକୁ ପରିଷ୍କାର ଶୁଭୁଥିଲା,···ବଡ଼ସିଂହାର ବେଶ ବଢ଼ିଗଲାଣି ସୁଶୀଳା··· ପୁଷ୍ପାଳକେ ରତ୍ନସିଂହାସନରୁ ଓହ୍ଲେଇ ସାରଲେଣି···ଆଉ ଟିକକ ପରେ ପୋଖରିଆରେ ପାଣି ପଡ଼ିବ···ପଡ଼ିଆସ୍ତା ଭୋଗ ଡାକିଯିବ···ଆଜି ତୋର ପାଳି··· ଯିବୁନି ? ଯିବୁନି ସୁଶୀଳା ?···ଯିବୁନି···ଯିବୁନି ସୁଶୀଳା···ଯିବୁନି···"

ଏଥର ପ୍ରକୃତିସ୍ଥା ହୋଇ ସେ ସବୁକଥା ମନେ ପକାଇଲା । ହଁ, ସେ ସ୍ଥିର କରିଥିଲା, ବଡ଼ଦେଉଳ ଚକଡ଼ା ମାଡ଼ିବନି ବୋଲି । ତା' ଭଙ୍ଗାଘରର ଖୁରକାନ୍ଥ ଭିତରେ ପଡ଼ି ପଡ଼ି ମରିଯିବ ପଛେ, ସେ ଆଉ କଳାହାଟ ଦ୍ୱାର ପାଖକୁ ଯାଇ ଗୀତଗୋବିନ୍ଦର ମନମତାଣିଆ ରାଗିଣୀ ତୋଳିଧରିବନି ପ୍ରିୟତମଙ୍କ ପାଇଁ । ଖିଆଲୀ ମନକୁ ତା'ର ଚାଳିଦେବନି ପ୍ରାଣସଙ୍ଗୀ ପୁରୁଷୋତ୍ତମଙ୍କ ପାଦତଳେ । ଦିନ ଦିନ, ମାସ ମାସ, ବର୍ଷ ବର୍ଷ ଧରି ସେବାକରିଆସୁଥିବା ସେବିକା, ଏଇକଥା

ମନ-ଫଳକରେ ପଥର-ଅକ୍ଷରରେ ଲେଖିଦେଇଥିବେଳକୁ ଦୁ'ଆଖିରୁ ତା'ର ଦୁ'ଧାର ଲୁହ ବୋହିପଡ଼ୁଥିଲା । ଅଭିମାନଭରା ଅସ୍ପଷ୍ଟ ସ୍ୱରରେ ସେ କେତେକଥା ମନକୁମନ କହିଲାବେଳେ ଓଠ ତା'ର ଥରଉଠିଥିଲା । ବିନ୍ୟସ୍ତ କେଶ ତା'ର ଅବିନ୍ୟସ୍ତ ହୋଇଉଠିଥିଲା—ସେ କେତେବେଳେ ଯେ ଶୋଇଯାଇଥିଲା, କିଏ ଜାଣେନା । ତା'ର ଏଇ ଗଲା କେତେଦିନର ପ୍ରତିଜ୍ଞାକୁ ମୁହୂର୍ତ୍ତିକରେ ପାଣିଗାର କରି ଦେଉଥିବା ଡାକରେ ସେ ପୁଣି ଚେଇଁଉଠିଥିଲା । ବାରମ୍ବାର ତା'କାନରେ ସେଇ ଭାଷା "ଯିବୁନି ସୁଶୀଳା···ଯିବୁନି ସୁଶୀଳା" ଗୁଞ୍ଜରି ଉଠିଥିଲା । ସେ ଗୋଡ଼ ବଢ଼େଇଲା ବଡ଼ଦେଉଳ ଆଡ଼େ । ରାତି ସେତେବେଳକୁ ଅଧାରୁ ବଳିଗଲାଣି । ଯେତେ ସନ୍ତର୍ପଣରେ ସେ ଘରୁ ବାହାରିବାକୁ ପ୍ରସ୍ତୁତ ହେଉଥିଲେ ବି ମା'ବୃଦ୍ଧାର ସ୍ନେହ ଆକଟ ସ୍ୱର ତା' କାନରେ ପଡ଼ିଲା, "ଯାଉଚୁ ଝିଅ···ଯା···ମୁଁ ବି ତୋ ବୟସରେ କେତେଥର ଏମିତି ରାଗ ଅଭିମାନ କରି ତାଙ୍କ ଦେଉଳ ସୀମା ମାଡ଼ିବିନି ବୋଲି ପଣ କରି ହାରିଯାଇଥିଲି ମା'···ସବୁ ଅଭିମାନ ମନରୁ ପୋଛିପକା··· ଭାଗ୍ୟରେ ଥିଲେ ଏ ସେବା ମିଳେ ମା'···ଭାଗ୍ୟରେ ଥିଲେ ମିଳେ । ସାବଧାନରେ ଯିବୁ···ରାତି ବିକାଳ, କାଳେ କେତେବେଳେ କୋଉ କଥା ।"

ସୁଶୀଳା ପାଇଁ ଏ ସବୁଦିନର ଭାଷା—ଶୁଣିଲା ନ ଶୁଣିଲା ହୋଇ ସେ ଦାଣ୍ଡରେ ପାଦ ଦେଉ ଦେଉ ତା'ର ମନେପଡ଼ିଯାଉଥାଏ ବଡ଼ଦାଣ୍ଡରେ ଏଇ ଟିକକ ପରେ ଯାହା ଘଟିବ, ସେଇ କଥା । ମାର୍କଣ୍ଡେଶ୍ୱର ସାହି ପାରିହୋଇ ବଡ଼ଦାଣ୍ଡରେ ପାଦ ଦେଉ ଦେଉ ସେ ପୁଣି ଆସିଯିବେ ଆଉ ତା' ଦେହକୁ ଦେହ ଲଗେଇ ପୁଣି ସାଙ୍ଗରେ ଚାଲିବେ । ଛନ ଛନ ଆଖିରେ ସେ ଚାରିଆଡ଼କୁ ଚାହିଁବ କାଳେ କିଏ ତାକୁ ଦେଖିବ ବୋଲି···।

ଏଇମିତି ଭାବୁଭାବୁ ସେ କେତେବେଳେ ବଡ଼ଦାଣ୍ଡରେ ଆସି ପାଦ ଦେଇଥିଲା ଆଉ ପାଦ ଦେଉ ଦେଉ ସେ ଦେଖିଲା ଚୁଡ଼ଙ୍ଗସାହିରୁ ଦେବଦାସୀ ଚଞ୍ଚଳା ଦଉଡ଼ିଲା ପାଦରେ ବଡ଼ଦେଉଳ ଆଡ଼କୁ ଛୁଟିଛି । ଚଞ୍ଚଳାକୁ ଦେଖୁ ଦେଖୁ ସେ ରାଗ ଅଭିମାନରେ ଜଳିଉଠିଲା । ମନକୁ ଯାହା ଆସିଲା, ସେ ତା' ଭାଷାରେ କହିଗଲା । ମାତ୍ର ଚଞ୍ଚଳାର ସେଇ ଏକା ଉତ୍ତର, "ମୁଁ ଭାବିଲି, ତୁ ଆଜି ଆସିବୁନି ବୋଲି···ମନେ ନାହିଁ ସକାଳଧୂପ ପରେ ନାଟମଣ୍ଡପ ଖୁଣ୍ଟିକୁ ଆଉଜି ଅଳସ ଭାଙ୍ଗୁ ଭାଙ୍ଗୁ କହୁ ନ ଥିଲୁ ରାତିପାଳିରେ ଆଜି ଖଟିବୁନି ବୋଲି···"

ସୁଶୀଳା ତାକୁ କଟମଟ କରି ଚାହିଁଲା; ମାତ୍ର ଚଞ୍ଚଳାର ହସରେ ସେଦିନ ବଡ଼ଦାଣ୍ଡର ଗ୍ରୁତ ଚିରିହୋଇ ଯାଉଥିଲା—ଅଲକ୍ଷ୍ୟରେ ତା' ପାଟିରୁ ବାହାରି ପଡ଼ୁଥିଲା, "ଅଲିକୁଳି···ଗ୍ଲେପସ୍ଲି···"

ମାତ୍ର ତା' ଗାଳରେ ଚଞ୍ଚଳାର ଚଞ୍ଚଳ ପାଦ ଦୁଇଟି ଟିକିଏ ହେଲେ ଥମିଗଲା ନାହିଁ । ସେ ପୁଣି ତରତର ହୋଇ ପାଦ ବଢ଼େଇ ଆଗେଇଯାଉଥାଏ, ବଡ଼ଦେଉଳ ଆଡ଼କୁ । ଅଲକ୍ଷ୍ମୀର ଏ ପ୍ରକାର ବ୍ୟବହାର ସୁଶୀଳାର ବହୁତ ଅସହ୍ୟ ହେଲା । କାହାର ପାଳରେ ହସ୍ତକ୍ଷେପ କରିବା ସେବକର ଧର୍ମ ନୁହେଁ । ମାତ୍ର ଦେଉଳକରଣ, ଭିତରଆଡ଼ୁ, ପାଛଯୋଶୀ ପ୍ରଭୃତିଙ୍କ କରିଆରେ ଘଣ୍ଟାଟିକୁ ମଣିମାଙ୍କ କାନକୁ ନେବା ଆଗରୁ ସେ ସ୍ଥିର କଲା ଚଞ୍ଚଳାର ମା' ବୁଢ଼ୀ ଦେବଦାସୀ, ଯେ କି ତାକୁ ଧରମଝିଅ କରିଥିଲା, ତାକୁ ସବୁ କଥା ଆଜି ଖୋଲି କହିବ । ସବୁଦିନେ ଚଞ୍ଚଳା କେମିତି ପାଳରେ ତା' ବଇରି ସାଜୁଛି, ସେକଥା ତାକୁ ବୁଝାଇଦେବ । ବଡ଼ଦେଉଳଆଡ଼କୁ ଗୋଡ଼ ତା'ର ବୁଲିପଡ଼ିଲା । ସୁଶୀଳା ଚୁଡ଼ଙ୍ଗସାହି ଆଡ଼େ ପାଦ ବଢ଼େଇଲା ।

(୨)

କବାଟରେ ଠକ୍ ଠକ୍ ଶବ୍ଦ ନ ହେଉଣୁ ଭିତରୁ ଶୁଭିଲା, "କିଏ ?"

ସୁଶୀଳାକୁ ଏହା ଚଞ୍ଚଳା ପାଟି ଭଳି ଜଣାପଡ଼ିଲେ ବି ସେ ଭାବିଲା ଯେ କିଏ ଜଣେ ସମବୟସୀ ଆସିଯାଇଛି ତା' ମା' ପାଖକୁ । ସୁଶୀଳା ଉତ୍ତର ଦେଲା, "ମୁଁ ସୁଶୀଳା···ମା' ଅଛି ତ ?"

ତା' ଭାବନାକୁ ମିଥ୍ୟାକରି ଭିତରୁ ସେଇ ସ୍ୱର ପୁଣି ସେ ଶୁଣିଲା, "କିଏ ସୁଶି ? ଆଲୋ, ତୁ କ'ଣ ଏତେବେଳେ ? ତୋର ପରି ଆଜି ପାଳ ?"

କବାଟ ଖୋଲିଲା ପରେ ସୁଶୀଳା ଦେଖିଲା ଚଞ୍ଚଳା ହସି ହସି ତାକୁ କହୁଛି, "ଆଲୋ, ମଠା ପିନ୍ଧିଚୁ ଯେ, କ'ଣ ପାଳ ସାରି ଫେରିଛୁ ? ଠାକୁରେ ଭଲରେ ଶୋଇଲେ ତ ? ଲକ୍ଷ୍ମୀ ସାଆନ୍ତାଣୀଙ୍କ ସାଙ୍ଗରେ ଗପ କରି ତୁ ଆଉ କାହିଁକି କରିଲୁନି ତ ପୋଖରିଆରେ ରାତିରେ ରହିଯିବା ପାଇଁ ।"

ଚଞ୍ଚଳାର ରସିକତାକୁ ବାଧା ଦେଇ ସୁଶୀଳା କହିଲା, "ଚଞ୍ଚଳା ତୁ···"

ଚଞ୍ଚଳା କହିଲା, "ଆଲୋ, ଏମିତି କଟମଟ ଆଖିରେ କ'ଣ ଚାହୁଁଚୁ ଯେ··· ତୋର କ'ଣ ହେଇଛି ଆଜି, ମତେ ଛୁଉଁନା, ମାସି ହେଇଗଲି, ସେଥିପାଇଁ ବଡ଼ଦେଉଳ ଆଡ଼େ ଯାଇପାରିଲିନି···"

ସୁଶୀଳା ବଜୁଳିବେଗରେ ଛୁଟିଲା ବଡ଼ଦେଉଳ ଆଡ଼େ । ଅରୁଣସ୍ତମ୍ଭ ପାଖରେ ପହଞ୍ଚିଲାବେଳକୁ ଦେଖିଲା ବଡ଼ଛତା ମଠର ବୁଢ଼ା ଖୋଲ, ଗୁଙ୍ଗୁ ବାଜା, ଗିନି ମେଞ୍ଚାଏ ଧରି ସିଂହଦ୍ୱାର କବାଟରେ ଗଳାଗଳି ବାହାରୁଛି । ସୁଶୀଳାକୁ ଦେଖୁ ଦେଖୁ କହିଲା, "ଆଲୋ ସଇତାନି···କୋଉଠି ରହିଲୁ କଲେ ? ତୋର ପରି ଆଜି ପାଳ ? ଚଞ୍ଚଳା ଆସିଥିଲା ବୋଲି ସିନା, ନ ହେଲେ ତ ନୀତି ଆଜି ଖଲର ହୋଇଥିଲା—ମଣିମାଙ୍କ କଥା ଜାଣିଛୁ ତ ? ମନେ ନାହିଁ···ମାଧବୀ

ଦେବଦାସୀର ମୁଣ୍ଡକାଟ କଥା ? ଚାଖିଲା ତତେ ଆଜ ବଞ୍ଚେଇଦେଲା ଲେ ବଞ୍ଚେଇଦେଲା···”

ତା’ କଥା ଶୁଣି ଶୁଣି ସୁଶୀଳା ଯେମିତି ଅଗ୍ନିଶଯ୍ୟା ଚକା ଉପରେ ଗଛ କାଟିଲା ଭଳି ପଡ଼ିଗଲା ।

( ୩ )

ସକାଳୁ ସକାଳୁ ମନ୍ଦିରମାଙ୍କ ହୁକୁମ ନେଇ ପିଆଦା ହାଜର । ହୁକୁମନାମାରେ ଯାହା ଲେଖା ହୋଇଥିଲା, ବୁଢ଼ୀ ଦେବଦାସୀକୁ ଶୁଣାଇ ଦେଉ ଦେଉ ବୁଢ଼ୀ ଗରଜ ଉଠିଲା ସୁଶୀଳା ଉପରେ, “ହେଇଗଲେ ନାଁ ପକେଇ ! ରାଜ ପାହିଲା ତ ବଡ଼ସିଂହାର ମାଢ ସରୁ ସରୁ, ରାଜଅଧର କ୍ଷଣକ ପରେ ତ ଘର ଗୁଡ଼ାଲୁ ' କୋଉଠି ମରିପଡ଼ିଲୁ । ଯା’ମଣିମା ଡକେଇଛନ୍ତି, ମରିବୁ ଯା ! ଛିଃ, ମୁଁ ଶୁଣିଥିଲି ତୋ’ର ଦେବତାଠେଇଁ ମନପ୍ରାଣ ଲାଗିରହିଛି । ତତେ ମରଣ ଯାହା ଅପୂର୍ବ ! ବୟସ ସବୁଦିନେ ରହିବନି । ଗୃହୁଁ ଗୃହୁଁ ଏ ଭରା ଯଉବନ ଖସିଯିବ, ସେତେବେଳେ ଏ ବୁଢ଼ୀ କଥା ମନରେ ପଡ଼ିବ ଲୋ ମା, ପଡ଼ିବ, ହେଲେ ସେତେବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହି ଯାଇଥିବ···ଚକାଡୋଳା ସବୁରହେଲେ ବି କାହାର ନୁହଁ, ବେଳପଡ଼ିଲେ···ମାଟି ହୋଇଯିବୁ ଲୋ···ମାଟି ହୋଇଯିବୁ···”

ସୁଶୀଳା ଚୁପ୍ ରହିଲା, ପାଟି ଖୋଲିବାର ଉପାୟ ନାହିଁ । କ’ଣ ବା କହିବ ? ତାର ଏ ଯନ୍ତ୍ରଣା ବା କିଏ ବୁଝିବ ? କାହାକୁ ବୁଝାଇବ ? ସେ ତ ନିଜେ ଏ ଅଡ଼ୁଆ ସୂତାଖିଅର ମୁଣ୍ଡ ପାଉନି, ଆଉ କାହାକୁ ବା ସେ ବୁଝେଇ ପଢଆଁ ସୃଷ୍ଟି କରିବ ?

ମୁଣ୍ଡ ତା’ର ଝାଇଁ ଝାଇଁ ହୋଇଗଲା ।

( ୪ )

ଗଭୀର ମଲ୍ଲୀମାଳର ବାସନାରେ ବଡ଼ଦାଣ୍ଡ ବି ମହକ ଉଠୁଥାଏ । ସୁଶୀଳା ଆଜି ସ୍ଥିର କରିଛି ଯେ, ସବୁକଥା ଖୋଲିକହିବ ତାର ପ୍ରାଣସଙ୍ଗିନୀ ରାଧାରାଣୀଙ୍କୁ । ନାଟମଣ୍ଡପରେ ଆଜି ଦୁ’ ଜଣଙ୍କର ମାହାରୀ ନାଟ ଥିଲା । ନାଟ ପରେ ଯଦି ରାଜଗୁରୁଙ୍କୁ କହି ସେ ଆଉ ରାଧାରାଣୀ ମହାପ୍ରସାଦ କୁଣ୍ଡୁଆ ଧରି କୋଇଲି ବୈକୁଣ୍ଠରେ ବସି କଥା ହୋଇଛନ୍ତି, ଅଣସର କଟିକଟିଆ ଅନ୍ଧାରରେ ଦେବଶଯ୍ୟା ସରିବା ପରେ ଦୁହେଁ ଜଗାଡଲେ ବସି କଥାବାର୍ତ୍ତା ହେବେ । ସୁଶୀଳା ତାକୁ ଭରସା ଦେଇଥିଲା ଯେ, ମନକଥା ଖୋଲି କହିବ । ସେଇଥିପାଇଁ ତରତର ହୋଇ ସେ ରାଜଅଧରେ ପାଦ ବଢ଼େଇଛି ବଡ଼ ଦେଉଳଆଡ଼େ ।

ସାତପାହାଚରେ ପହଞ୍ଚୁ ପହଞ୍ଚୁ ପାଟଯୋଶୀ ମହାପାତ୍ରଙ୍କ ଗର୍ଜନ ତା କାନରେ ପଡ଼ିଲା, "ଏ ଦେବଦାସୀ ରାଧାରାଣି ! ଜଗମୋହନ ଅନ୍ଧାର ହୋଇଯିବ ଆଖିପିଛୁଳାକେ, ପୋଖରିଆ ଆଡ଼କୁ ଆଗେଇ ଯା, ବେଳ ହୋଇଗଲା ।" ସୁଶୀଳା ଅନ୍ଧାର ଭିତରେ ନିଜକୁ ମିଶେଇଦେଲା ।

ମାତ୍ର ଏ କ'ଣ ? ଅନ୍ଧାର ଭିତରୁ ଯେ ସ୍ପଷ୍ଟ ଶୁଣିପାରିଲା ସେଇ ପରିଚିତ ସ୍ୱର, "ସୁଶୀଳା, ରାଧାରାଣୀ ପାଖରେ ତୁ ଆସିଯାଇଛୁ ଭାରି ଭଲହେଲା, ତୋ' ତୁଣ୍ଡରେ ଗୀତଗୋବିନ୍ଦ ର ସ୍ୱର..." ସୁଶୀଳା ଅନୁଭବ କଲା ମୁଣ୍ଡକୁ ତା'ର କିଏ ଜଣେ ଆଉଁସି ଦେଉଛି ।

ଆଲୁଅ ଜଳିଉଠିଲା । ରାଧାରାଣୀ କେତେବେଳେ ପଛରୁ ଆସି ତା କାନ୍ଧରେ ହାତରଖି କହିଲା, "ହେଇଲେ ଛଇଳ ! କ'ଣ ମୋ' ସାଙ୍ଗେ ସଉତୁଣୀ ସାଜିଛୁ କି ? ମୋ' ପାଖରେ ପୁଣି ହାଜର ପୋଖରିଧାରେ ? ଅଉ ସାଆନ୍ତେ କ'ଣ କହିଲେ ?"

ସୁଶୀଳା ଲାଜରେ ମଉଳି ପଡ଼ିଲା ।

( ୫ )

ବର୍ଗୀ ଦୁଇଜଣ ସେଦିନ ତାର ବାଟ ଓଗାଳିଲେ । ସୁଶୀଳା ବାଧାଦେଲା, "କରେ ଅଲପେଇଷା ଦଳ, ମୋ ସାଙ୍ଗରେ ଏମିତି ଅହନ୍ତା ସାଜିଛ କାହିଁକି ? ସନ୍ଧ୍ୟାଧୂପ ଘଣ୍ଟା ବଡ଼ଦେଉଳରୁ କେତେବେଳୁ ଶୁଣି ତରତର ହୋଇ ବାହାରିଛି... ଦେବଦାସୀ ମା' ବାଧିକରେ ପଡ଼ିଛି...ଚନ୍ଦନଲାଗି ହୋଇଯିବ, ମୋ' ବାଟରେ କିଆଁ ?"

ଗୋଟାଏ କର୍ଗୀ ବେକଟାଳ ହସ ହସିଉଠିଲା, "ଏତକ କାଣିଲୁନି ଦେବଦାସୀ ? ସକାଳ ଧୂପବେଳେ ନାଟମଣ୍ଡପ କଥା ମନେଅଛି ତ ?"

ଭିତର ରାଗକୁ ଗୁପିରଖି ଘୃଣାପୂର୍ଣ୍ଣ ସ୍ୱରରେ ସେ ପଚାରିଲା, "କୋଉ କଥା ?"

ଘୋଡ଼ାର ଲଗାମଟାକୁ ଜୋର୍‌ରେ ଜାବୁଡ଼ି ଧରି ବର୍ଗୀ ପାଟିକରି ଉଠିଲା, "ସେଇ ଲୋକ, ଯେ ସବା ଆଗଧାଡ଼ିରେ ବସି ନାଚ ଦେଖୁଥିଲେ, ଡାହାଣ ହାତରେ ତାଙ୍କର ଚମ୍ପାମାଳ ଗୁଡ଼ାହୋଇଥିଲା ଓ ଯାହାଙ୍କୁ ତୁ କଣେଇ କଣେଇ ବାରମ୍ବାର ଚାହୁଁଥିଲୁ ନାଚଲାବେଳେ ? ତୋର କିଛି ମନେନାହିଁ ?"

ସୁଶୀଳା ଆହତ ବାଘୁଣୀର ସ୍ୱର ତୋଳିଲା, "ବଦ୍‌ମାସ !"

ସାଙ୍ଗ ବର୍ଗୀ ପାଟିକରି ଉଠିଲା, "ଆବେ ସିଆଣି ! କହ କେତେ ମାଢ଼ି ସୁନା ତୋର ଦରକାର ? ସାଫ୍ ସାଫ୍ କହିଦେ, ଏତେ ବୁଲଉଛୁ କାହିଁକି ?"

ସୁଶୀଳା ଆଗରେ ଦୁ' ଘୋଡ଼ାଙ୍କ ମୁହଁ ଯୋଡ଼ ହୋଇଗଲା । ତା'ରୁ ଖଣ୍ଡେ ଧମକର ସ୍ୱର, "ମଣିମାଙ୍କୁ ଜାଣିଛଟି ? ବାଟ ଛାଡ଼, ନ ହେଲେ ପାଟି କରିବ ; କାଲି ଏତେବେଳକୁ ଦୁ' ଅକପେଇସ୍ଙ୍କ ଗଣ୍ଡିରୁ ମୁଣ୍ଡ ଅଲଗା ହୋଇ ଯାଇଥିବ ।"

ପ୍ରଥମବର୍ଗୀ ଇସାରା ଦେଲା, "ଉଠାଅ ଦାସ୍ମ୍ଜାଦକୀ···"

ଦୁହେଁଯାକ ତା'ର ଦୁ' ତେଣା ଧରି ଯେତେବେଳେ ଘୋଡ଼ା ଉପରକୁ ଉଠେଇଦେଲେ, ସୁଶୀଳା ସେତେବେଳେ ତା'ର ଜ୍ଞାନ ହରେଇଥିଲା । ଘୋଡ଼ାଙ୍କ ଶବ୍ଦ ଭିତରେ ବଡ଼ଦାଣ୍ଡର ଧୂଳି କୁଣ୍ଡଳୀ ସୃଷ୍ଟି କଲା ।

( ୭ )

ତହିଁଆରଦିନ ପୁରୁଷୋତ୍ତମଧାମରେ ଟ୍ରପ୍ଟାପ୍ ସକାଳୁ ସକାଳୁ ଆରମ୍ଭ ହୋଇଯାଏ । କିଏ କହୁଥାଏ "ସୁଶୀଳା ଦେବଦାସୀକୁ ମଣିମା ମୁଣ୍ଡକାଟ ଆଦେଶ ଦେଇସାରିଲେଣି ।" କିଏ କହୁଥାଏ, "ବଡ଼ାଣ୍ଡ ଲୁଚିଲୁଚି, ଆଖିବୁଜି ଘିଅ ଖାଉଥିଲା, ଯେମିତି କେହି ଦେଖିପାରିବେନ ବୋଲି; ହେଲେ ଆଜ ଧରା ପଡ଼ିଗଲା···" କିଏ କହିଲା, "ଶଙ୍କରାଚାର୍ଯ୍ୟଙ୍କ ଯାଏ କଥା ଗଲାଣି । ଦେବାଙ୍ଗିନୀ ଦେବଦାସୀ ଭ୍ରଷ୍ଟା ହେଲେ କ'ଣ ହେବ, ସେ ଯାହା ଶାସ୍ତ୍ରରୁ ବଖାଣିବେ, ମଣିମା ସେଇଆ କରିବେ ।" ଆଉ ଦଳେ କହିଲେ, "ରୂପର ମଦ୍ୟକରେ ଯୌବନର ମଦମତ୍ତ ହୋଇ ଦୋସ୍ତରୁଣୀ ସାରା ସମ୍ପ୍ରଦା ନିଯୋଗରେ କଳଙ୍କ ଲଗାଇଲା··· ପାପିନୀ···କଳଙ୍କିନୀ···"

ସୁଶୀଳା କନ୍ଦୁ ମା' ବୁଢ଼ୀ ଦେବଦାସୀ କେଉଁର ସମ୍ପୂର୍ଣ୍ଣ ଅଧୀନ ହୋଇଯାଇଥାଏ, ସକାଳୁ ସକାଳୁ ତା'ର ମାର୍କଣ୍ଡେଶ୍ୱର ସାହି ଘରେ । ବୁଢ଼ୀ ଦାଣ୍ଡକବାଟ, ବାଡ଼ିକବାଟ କିଲି ଦେଇଥାଏ ମଣିମାଙ୍କ ପିଆଦା ଆଉ ବାହାରଲୋକଙ୍କ ଦାଉରୁ ରକ୍ଷା ପାଇବାକୁ ।

ସୁଶୀଳା ତାକୁ ଲୁହ ଉଛୁଳା ଆଖିରେ ଶେଷକଥା ଶୁଣାଇଲା, "···ମନ୍ଦେ ପଡ଼େ ଜାଅନ୍ତା ମାରି ଦେ···ହେଲେ ମୁଇ ଚକାଡ଼ୋଳାକୁ ସାକ୍ଷୀ ରଖି କହୁଚି ଏସବୁ ସେଇ ଚଞ୍ଚଳାର କାମ, କାରଣ ଯେତି ମୋର ଚେତା ପାଇଲାବେଳକୁ ଦେଖିଲି ଚଞ୍ଚଳା ରାଣୀବେଶରେ ସେ ଘୋଡ଼ାମୁହାଁ କୋଳରେବସି ମତେ ଚାହିଁ ହସୁଛି ।"

ବୁଢ଼ୀ ପଚାରିଲା, "ଚଞ୍ଚଳା ସିନା ବାଟଛାଡ଼ ଅବାଟକୁ ଗଲା ? ତା'ଦୋଷ ରୁ କାହିଁକି ଦେଉଛୁ ?"

"ମୁଁ ଠିକ୍ ଶୁଣିଲି ମା', ସେ ଲୋକଟା ଚଞ୍ଚଳାକୁ କହୁଥାଏ, 'ତୁ ମତେ ଠିକ୍ ଗୋଲାପର ସନ୍ଧାନ ଦେଇଛୁ । ଆହା, ରୂପ ଯେମିତି ବାସନା ସେମିତି...ମୁଁ ତାକୁ ସୁଶୀଳା ନ ଡାକି ଗୋଲାପ ଡାକିବି । ତୋ' ଉପରେ ରହିଲା ତୁ ତାକୁ ରାଜି କରାଇବୁ, ଯେତେ ସୁନା, ମାଣିକ ନେବ ମୁଁ ରାଜି..."

—"ତା' ପରେ ?"

—"ଚଞ୍ଚଳା ମତେ କଟାକ୍ଷ ହାଣି ଆଖିରେ ଖରାପ ଇସାରା ଦେଇ ସେଠୁ ଚାଲିଗଲା ।"

—"ସେଇଠୁ ?"

—"ସେ ଲୋକଟା ମୋ'ଆଡ଼କୁ ମଦନମୋହନ ଗୃହରେ ଆଗେଇ ଆସିଲା । ମୋ ଦୁ' ଓଠରେ ହାତ ଦେଇ ଦେଉ ମୁଁ ଚକ୍କାର କରି ଉଠି ତା' ଡାହାଣହାତକୁ କାମୁଡ଼ି ଦେଲି ।...ତା'ପରେ ମୁଁ କିଛି ଜାଣେନା ।".

—"ରାତି ପାହିଲାରୁ ତୋର ଲଙ୍ଗଳାମୁକୁଳା ଦେହ ମିଳି ବଡ଼ଦାଣ୍ଡରୁ ମିଳିଲା । ଲୋକଙ୍କ ପାଟିରେ ବାଡ଼ବନ୍ଧା ନାହିଁ । ଘରଆଡ଼େ ଏ ଖବର ଚହଟି ଯିବ । ତୋର ପୁଣି ଆଜି ପାଳି...କ'ଣ କରିବା କହ ସୁଶୀ..."

ଦାଣ୍ଡକବାଟରେ ଆଘାତ ଶୁଭିଲା । ଧୀର ଆବାଜ କ୍ରମଶଃ ଜୋର୍ ଆବାଜରେ ପରିଣତ ହେଲା । ବୁଢ଼ୀ ସୁଶୀଳାକୁ ଇସାରା ଦେଲା ତଳଘର ଆଡ଼୍‌ ଉପରକୁ ଉଠିଯିବାକୁ ।

( ୭ )

ତା' ହଦ ପୁଣି ଭାର୍ଗିଲା ରାତ ଅଧ ପାଖାପାଖି । ସେଇ ପରିଚିତ ସ୍ୱର, "ଜଗମୋହନରୁ ସବୁ ଲୋକ ବାହାରିଯିବେ ଆଉ ଟିକକ ପରେ । କାଳି ଅନ୍ଧାର ହେବ, ଆଜି ତୋର ପାଳି, ଯିବୁନି ସୁଶୀଳା, ଯିବୁନି...ଯିବୁନି ?..."

ଥରଗ ଜରଜର ହୋଇ ସୁଶୀଳା ପାଦ ବଢ଼େଇଲା । ଆଜି ସବୁକଥା ସେ ଜଣାଇଦେବ । ଅପବାଦ-ନାଆଁରେ ପୋଡ଼ଜଳ ମାରିଦେଲଣି ତାକୁ । ତଥାପି ଅଦ୍ଭୁତ କମ୍ପନ । ଯାହାହେଲେ ଅଜି ଗୋଟେ ଏ ଫଇସଲ ହୋଇଯିବ । ସୁଶୀଳା ଘରୁ ଗୋଡ଼ କାଢ଼ିଲା ।

ପାଟଯୋଶୀ, ରାଜଗୁରୁ, ଦଉ ମହାପାତ୍ର ତଳୁଛୁଠାରୁ ଆରମ୍ଭ କରି ଅନେକଙ୍କର ହମତ୍ତେ ତାକୁ ସେଦିନ କେମିତି ଅଲଗା ଆଖିରେ ଦେଖିଲେ । ମାତ୍ର ବତୀ ଲିଭିଯିବା ଆଗରୁ ସେ ସ୍ପଷ୍ଟ ଦେଖିପାରିଲା ଯେ ଅନ୍ଧାର ଭିତରକୁ ଚଞ୍ଚଳା ଓ ସେଇ ଭୟଙ୍କର ଲୋକଟି ବି ପଶିଆସିଲେ । ସୁଶୀଳା ଏଥର ଠିକ୍ ବୁଝିଲା, ଏସବୁ ଚଞ୍ଚଳାର କାରସାଦି । ଶେଷକୁ ଆଜି ପ୍ରଭୁଙ୍କ ଭିତରେ ସେମାନେ ତାଙ୍କ ରାକ୍ଷସ

ଇଚ୍ଛାକୁ ପୂର୍ଣ୍ଣ କରିବେ ବୋଲି ସିଦ୍ଧାନ୍ତ ନେଇଛନ୍ତି । ମାତ୍ର ସେତେବେଳକୁ ସବୁ ସରିଗଲାଣି । ପାଟି ଖୋଲିବାର ଉପାୟ ନାହିଁ । ନୀରବ ନିସ୍ତବ୍ଧ ଅନ୍ଧାର ଭିତରେ କେବଳ ମିଛ ହୁଏ ଆଉ ଥାଆନ୍ତି ପ୍ରଭୁଙ୍କ ସହ ଦେବଦାସୀ । ସୁଶୀଳା ନିଜକୁ ପ୍ରସ୍ତୁତ କଲା ଅନାଗତର ମୁକାବିଲା କରିବାକୁ । ଚଞ୍ଚଳା ଆଉ ସେଇ ଲୋକଟାକୁ ଆଜି ସବୁରି ଆଖିରେ ଧରିପକେଇ ଶୂଳୀରେ ଚଢ଼େଇଦେବା ପାଇଁ ସେ ପଣ କଲା ତା' ମନେମନେ ।

ନିଝୁମ ଅନ୍ଧାର ଭିତରେ ସେ ସ୍ପଷ୍ଟ ଅନୁଭବ କଲା ଚଞ୍ଚଳା ତା' ପାଖକୁ ଲାଗିଆସୁଛି । ସେ ଠିକ୍ ଶୁଣିଲା ଚଞ୍ଚଳାର ସ୍ୱର, "ସୁଣି···"

ସୁଶୀଳା ତା' କାନକୁ ଜୋର୍‌ରେ କାମୁଡ଼ି ଧରିଲା । ସେ ଛଟପିଟ ହେଲା, ହାତ କଙ୍କଣର ରୁଣ୍ଟୁଣ୍ ଶବ୍ଦ ତାର ପୋଖରିଆ ନିସ୍ତବ୍ଧତାକୁ ଭାଙ୍ଗି ପକେଇଲା । ତଥାପି ସୁଶୀଳା ହାତମୁଠାରୁ ଚଞ୍ଚଳାର କାନ ଏପଟସେପଟ ହେଲାନି ।

ତା'ପରେ ସୁଶୀଳାପାଖୁ ସେ ଲୋକଟା ଲାଗିଆସିଲା ଭଳି ସେ ଠିକ୍ ଜାଣିଲା । ମାତ୍ର ଏ କ'ଣ । ଗାଢ଼ ଅଧରେ ତାକୁ ଉଠାଉଥିବା ସ୍ୱରରେ ଲୋକଟା କହୁଚି, "ମତେ ଚହ୍ନିଲୁନି ସୁଶୀଳା, ମୋ ହାତକୁ ଏମିତି କାମୁଡ଼ିଦେଲୁ ।"

ସୁଶୀଳା ଏଥର ଆରହାତରେ ତା'ର ପିନ୍ଧା ଲୁଗାକୁ ଧରିପକେଇଲା, ଲୋକର ଚୁପ୍‌ଚୁପ୍ ଅନୁନୟ, "ଛାଡ଼ିଦେ···ଆଉ ବେଳେ ନାହିଁ" ସେ ଶୁଣିଲାନି ।

ପୋଖରିଆରେ ରତ୍ନଦୀପ ଜଳି ଉଠିଲାରୁ ସୁଶୀଳା ଯାହା ଦେଖିଲା, ବିଶ୍ୱାସ କରିପାରିଲାନି ।

ତା' ଡାହାଣ ହାତରେ ସୁନାଝାଲର ଜରି ଥାଇ ଯେଉଁ ଶାଢ଼ୀ କାନି ରହିଛି, ମା' ଲକ୍ଷ୍ମୀ ସେଇ ଶାଢ଼ୀ ପିନ୍ଧି ଜଗନ୍ନାଥଙ୍କ ପାଦତଳେ ଉଭା ହୋଇଛନ୍ତି । ଡାହାଣହାତ ଲୁଗାକାନି ମହାପ୍ରଭୁଙ୍କ ବାଁ ଭୁଜରୁ ଲମ୍ବି ଆସିଛି ।

ସୁଶୀଳାର ଚେତା ସେଇଠି ବୁଡ଼ିଗଲା । ତୁଣ୍ଡରେ ତା'ର ଶେଷ ଅସ୍ପଷ୍ଟ ବାକ୍ୟ, "ମହାପ୍ରଭୁ ଏତେ ମାୟା···"

ଦଇତାପତିଏ ପାଟି କରି ଉଠିଲେ, "ସାନବାଡ଼ଙ୍କ ଡାହାଣ ଭୁଜରେ ମଣିଷ ଦାନ୍ତଚିହ୍ନ ଦାଗ ।" ଦେଉଳ ମାରି ହେଲା । ମହାସ୍ନାନ ହେବ, ଶ୍ରୀଅଙ୍ଗରେ ଦାଗ, ପାଟଯୋଶୀଙ୍କୁ ଡାକରା ଦିଅ । ଶଙ୍କରାଚାର୍ଯ୍ୟ ଆସନ୍ତୁ । ମଣିମା ବିଜେ କରନ୍ତୁ । ତା'ପରେ ଯାହା ମିଛ ହେବ ।"

ବଡ଼ବାବୁ ମଝିବାଡ଼-ସାନବାଡ଼, ଲକ୍ଷ୍ମୀ ଠାକୁରାଣୀ ହମନ୍ତେ ସୁଶୀଳାର ଅଚେତ ଦେହକୁ ଚାହିଁ ମୁରୁକି ମୁରୁକି ହସୁଥିଲେ ।






ନିଛକ ସତ୍ୟ ଘଟଣାଟିଏ, ଚରିତ୍ରଗୁଡ଼ିକ ଏବେ ବି ଜୀବନ୍ତ। ପାଠକପାଠିକାଙ୍କ ଭାଗ୍ୟରେ ଥିଲେ ଏବେବି ପୁରୁଷୋତ୍ତମ ଧାମରେ ସାଧିକାଙ୍କ ଦର୍ଶନ ମିଳିବ।

—"ମତେ ଭରି ଭୋକ ହେଉଛି—କିଛି ଖାଇବାକୁ ଦିଅନ୍ତୁ···ଭୟଙ୍କର କଷ୍ଟ ବି ହେଉଛି···ଓଃ !" ଅନିନ୍ଦ୍ୟସୁନ୍ଦରୀ ଫରାସୀ ତରୁଣୀ ଅନିତା ଅାଞ୍ଜେଲ୍ କଣ୍ଠରେ ବିକଳ ଉକ୍ତି—କ୍ଷୁଧା, ଯନ୍ତ୍ରଣାରେ ମୁଖମଣ୍ଡଳ ବିଦୀର୍ଣ୍ଣ ହୋଇପଡ଼ୁଛି । ଉଦାସ ଗୃହାଣୀରେ ଭରିରହିଛି କେବଳ ଯନ୍ତ୍ରଣା ଓ କ୍ଷୁଧାରୁ ମୁକ୍ତି ପାଇବାର ଦୁରନ୍ତ କାମନା ।

ପ୍ରେତାତ୍ମା ତା' ଉକ୍ତିର ପୁନରାବୃତ୍ତି କରି ସାଧିକାଙ୍କୁ ଚାହିଁ ରହିଲା । ସାଧିକା ବାକ୍‌ଶୂନ୍ୟ ହେଲେ । ପ୍ରେତାତ୍ମାକୁ ଚାହିଁ ଦେଖିଲେ, ସେ ଉତ୍ତରକୁ କେବଳ ଅପେକ୍ଷା କରିଛି ।

ସେଦିନ ଥିଲା ୧୯୮୧ ମସିହା ଜୁଲାଇ ମାସ ୨୩ ତାରିଖ ଗୁରୁବାର । ସେତେବେଳେ ସମସ୍ତ ପ୍ରାୟ ରାତ୍ରି ଏଗାରଟା କେତେ ମିନିଟ ହେବ । ପ୍ରେତାତ୍ମା ଓ ସାଧିକା ଉଭୟ ଥିଲେ ଶ୍ରୀକ୍ଷେତ୍ରର ମହୋଦଧି ଉପକଣ୍ଠରେ ।

ସାଧିକା ଉତ୍ତର ଦେଲେ, "ତୁମେ କ୍ଷୁଧା ଆଉ ଯନ୍ତ୍ରଣା ଉଭୟ କଷ୍ଟରେ ଘାରି ପଡ଼ୁଛ । କିନ୍ତୁ ଏ କଷ୍ଟ ଦୂର କରିବାକୁ ଯାହା ସମ୍ଭବ ହେବ, ତା' ମୁଁ କରିବ । ତୁମେ ଅଧୀର ହୁଅନା···"

ପ୍ରେତାତ୍ମା ପ୍ରତିବାଦ କଲା, "—ହେବନି···ଏଇ, ଏଇ ସମୁଦ୍ର ଦେଖିପାରୁଛନ୍ତି ?"

—'ହଁ', ସାଧିକାଙ୍କର ସଂକ୍ଷିପ୍ତ ଉତ୍ତର ।

—"କେତେ ସୁନ୍ଦର ଦିଶୁନି ?"

—"ହଁ ।"

—"ସମୁଦ୍ର ସ୍ନାନ କେତେ ଆନନ୍ଦଦାୟକ ? ପ୍ରାଣରେ କେତେ ଶିହରଣ ଆଣିଦିଏ !"

—"ହଁ ।"

—"ଆଉ ସେଇ ଉନ୍ମାଦନା ଶିହରଣ ଭିତରେ ଉଚ୍ଛଳ ହୋଇ ରହିବା ଅବସ୍ଥାରେ ଯଦି କିଏ ତା' ଲହରୀ ହାତରେ ଚାପି ହୋଇଯାଏ···ତେବେ···"

ସାଧିକା ନିଜ ଆଖିରୁ ଲୁହ ପୋଛୁ ପୋଛୁ କହିଲେ, "ହଁ, ତୁମକୁ ବହୁତ କଷ୍ଟ ହେଉଛି । କିନ୍ତୁ···"

—"କାହିଁକି ରହିଗଲେ ?"

—"ବହୁତ କଥା କହିବାକୁ ଅଛି···କିନ୍ତୁ ତୁମ ଯନ୍ତ୍ରଣା···କ୍ଷୁଧା···"

ଆଉ କିଛି ଅଳ୍ପକଥା ପରେ ଅମିତାର ପ୍ରେତାତ୍ମା ସାଧିକାଙ୍କଠାରୁ ବିଦାୟ ନେଲା ।

ତହିଁଆରଦିନ ରାତିରେ ଅମିତା ପୁଣି ପହଞ୍ଚି ସାଧିକାଙ୍କୁ କହିଲେ, "ମୁଁ ଆପଣଙ୍କ ପାଖକୁ ପୁଣି ଆସିଛି ମା'···ତା'ର ଦୁଇଟି କାରଣ ଅଛି···ସେ ଏଇଠି ଅଛି ଆପଣଙ୍କ ପାଖରେ···ଆପଣ ତାକୁ ଆଶ୍ରୟ ଦେଇଛନ୍ତି···ତା'ଛଡ଼ା ମୋର ମନେହେଉଛି ଆପଣ ମତେ ଏ କଷ୍ଟରୁ ଉଦ୍ଧାର କରିବେ । ···"

—"ସେ ଆଜି ତୁମକୁ କିଛି ଦେଇନି ଖାଇବାକୁ ?"

—"ହଁ, ମୁଁ ଯେଉଁ ଫଳ ଭଲ ପାଏ, ସେ ସମୁଦ୍ରକୂଳରେ ସେଇଫଳ ରଖି ଦେଇଆସିଥିଲା । କିନ୍ତୁ ମତେ ତଥାପି ଭୋକ ହେଉଛି···ତା'ଛଡ଼ା ମୁଁ ତା'ଠାରୁ କିଛି ଖାଦ୍ୟ ଗ୍ରହଣ କରିବିନି ।"

—"କାରଣ ?"

—"ଆପଣ ଜାଣିନାହାନ୍ତି । ଯେତେବେଳେ ମତେ ସମୁଦ୍ର ଢକଢକ କରି ମାରିଦେଉଥିଲା, ମୁଁ କେତେ ବିକଳ ହୋଇ ତାକୁ ଡାକୁଥିଲି । ସେ ମୋ କଥା ମୋଟେ ଶୁଣିଲାନି···କାହିଁକି, କାହିଁକି ମୋ ପାଖକୁ ସେ ଦଉଡ଼ି ଆସିଲାନି—ମତେ ଧରି ପକେଇ ସମୁଦ୍ରରୁ ବାହାର କରିନେଲାନି ?"

ସାଧିକା କହିଲେ, "...ହଁ ମା, ମୁଁ ତା' ଜାଣେ, ମାତ୍ର ସେଥିରେ କିଛି ଲାଭ ହୋଇ ନ ଥାନ୍ତା । ତା'ଛଡ଼ା ସେ ତ ମିଲେଟେରୀ, ଏ ଅପ୍ରତ୍ୟାଶିତ ବିପଦରେ ସେ ପୂରା ଜଡ଼ ହୋଇଗଲା । କ'ଣ କରିବ କିଛି ଭାବି ପାରିଲାନି, ତେଣୁ..."

—"କିନ୍ତୁ ମା', ଆମେ ତ ବିବାହ କରିବାକୁ ସ୍ଥିରୀକୃତ କରି ବିଦେଶ ଭୂଇଁରୁ ଏଠାକୁ ଆସିଥିଲୁ । ଜୀବନସାଥୀ ହୋଇ ରହିଥାନ୍ତୁ ପରସ୍ପରର । ତେବେ ମୋ ବିପଦବେଳେ... "

—"ତୁମ ଦୁହିଁଙ୍କର ବିବାହ କେବେ ହୋଇନି ?"

-- "ମାନେ...ଆଉ ତ ହୋଇପାରିବନି । ମୋର ତ ଏ ଅବସ୍ଥା । ସେ ତ ମୋତେ ଦେଖିପାରୁନି..."

ସାଧିକା ହସିଲେ । ଅମୀତା ପ୍ରଶ୍ନ କଲା, "ହସିଲେ ଯେ..."

—"ହଉ, ଯାଅ, ପରେ କହିବି, ଶାନ୍ତ ହୁଅ...ଧୀର ହୁଅ...ଧୈର୍ଯ୍ୟଧର... ସବୁ କହିବି..."

ତହିଁଆରଦିନ ସେମିତି ସ୍ଥାନରେ ଅମୀତାର ପ୍ରେତାତ୍ମା ସାଗର ସମୀରରେ ଭାସିଭାସି ଆସି ସାଧିକାଙ୍କ ପାଖରେ ଠିଆହେଲା । ସାଧିକା ଆରମ୍ଭ କଲେ, "ଆଜି କେମିତି ଲାଗୁଛି ମା... ?"

—"ସେମିତି ଦୁଃଖ...ସେମିତି ଯନ୍ତ୍ରଣା...ବଢ଼ି ଯାଉଛି ପଛେ ମୋଟେ କମୁନି, ଏ ଯନ୍ତ୍ରଣା ଆଉ ଦୁଃଖ ।"

—"ଶୁଣ, ଊନବିଂଶ ଶତାବ୍ଦୀର ଶେଷ ଭାଗକୁ ଜଣେ ବିଶିଷ୍ଟ ଭାରତୀୟ ସନ୍ନ୍ୟାସୀ ଆମେରିକା ଭ୍ରମଣରୁ ଭାରତକୁ ଫେରି ଆସିଥିଲେ ।"

—"ସେ କଥା ମତେ କାହିଁକି..."

ସାଧିକା କହିଲେ, "ଧୈର୍ଯ୍ୟ ଧରି ଶୁଣ । ତାଙ୍କ ବ୍ୟକ୍ତିତ୍ୱ, ଧର୍ମ ମନୋଭାବ ଓ ଆଧ୍ୟାତ୍ମିକତାରେ ଉଦ୍‌ବୁଦ୍ଧ ହୋଇ କେତେଜଣ ଆମେରିକୀୟ ତାଙ୍କ ସହିତ ଭାରତକୁ ଆସିଥିଲେ । ତୁମେ ସେଇମାନଙ୍କ ଭିତରୁ ଜଣେ ଥିଲ..."

—"ତା'ପରେ ?"

—"ସନ୍ନ୍ୟାସୀଙ୍କ ସହ ତୁମ୍ଭେମାନେ ଭାରତର ବିଭିନ୍ନ ନଗରକୁ ବାହାରିଥିଲ ପରିଭ୍ରମଣରେ । ସାରା ଭାରତରେ ସେ ଯେଉଁଆଡ଼େ ଯାଉଥିଲେ ତାଙ୍କ ପ୍ରତି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରିଯାଉଥିଲା...ବିଦେଶାଗତ ତାଙ୍କର ବହୁ ଶିଷ୍ୟଙ୍କ ଗହଣରେ ତୁମେ ତାଙ୍କ ସହ ଭାରତର ବିଭିନ୍ନ ପ୍ରାନ୍ତ ବୁଲି ଦେଖୁଥିଲ..."

—"ଆମ୍ଭେମାନେ କ'ଣ ସାରା ଭାରତ ପରିକ୍ରମା କଲୁ ?"

—"ହଁ, ସେଇ ପରିକ୍ରମା ବେଳେ ତୁମେ ପୁଣ୍ୟ ବାରାଣସୀରେ ପହଞ୍ଚିଥିଲ । ସେତେବେଳେ ସେଇ ସହରରେ ଧନାଢ୍ୟ ସମ୍ଭ୍ରାନ୍ତ ଆଗ୍ରୱାଲ ପରିବାର ବାସ କରୁଥିଲେ । ସେମାନେ ସହରର କେବଳ ସମ୍ଭ୍ରାନ୍ତ ତଥା ଧନୀ ପରିବାର ନ ଥିଲେ, ସେମାନେ ପ୍ରତ୍ୟେକ ବିଶିଷ୍ଟ ବ୍ୟକ୍ତିଙ୍କ ସମ୍ବର୍ଦ୍ଧନା ତଥା ଧର୍ମ ସଭାମାନଙ୍କରେ ମଧ୍ୟ ଯୋଗ ଦେଉଥିଲେ ଏବଂ ଧର୍ମକାର୍ଯ୍ୟରେ ସେମାନଙ୍କର ନିଷ୍ଠା ରହିଥିଲା ।"

—"ତା'ପରେ···"

—"ସେ ଥିଲା ଉକ୍ତ ଆଗ୍ରୱାଲ ପରିବାରର ଜଣେ ସନ୍ତାନ । ବାରାଣସୀରେ ତୁମର ତା' ସହିତ ଦେଖାହେଲା ଓ ଉଭୟେ ପରସ୍ପର ପ୍ରତି ଆକୃଷ୍ଟ ହେଲ ଓ କୁଳୀନ ବ୍ରାହ୍ମଣ ପରିବାରର ସମସ୍ତ ପ୍ରତିବାଦ ସତ୍ତ୍ୱେ ତୁମେ ଦୁହେଁ ବିବାହ କରିବାକୁ ସ୍ଥିର କଲ ।"

ଅମିତା ବାଧା ଦେଲା—"ଓଃ ସେଇଥିପାଇଁ ଆପଣ କାଲି ମତେ ପଚାରୁଥିଲେ ଆମର ବିବାହ ହୋଇଛି କି ନାହିଁ ?"

—"ହଁ, ତୁମର ବିବାହ କରିବା ପ୍ରସ୍ତାବ ଆଗ୍ରୱାଲ ପରିବାର ଉପରେ ବଜ୍ର ପକାଇଦେଲା ।"

—"ସେତେବେଳେ ଆମର କ'ଣ ଏ ନାଁ ଥିଲା··· ?"

—"ନା···ନା ସେମିତି କେମିତି ଭାବୁଛ ? ତା'ର ଏ ନାଁ ନ ଥିଲା କି ତୁମ ନାଁ ମଧ୍ୟ ଅମିତା ନ ଥିଲା ।"

—"ତା'ପରେ ?···"

—"ଦୁଃଖରେ ମ୍ରିୟମାଣ ହୋଇ ସେ ତୁମକୁ ନେଇ ମୋ ପାଖକୁ ଆସିଲା ।"

—"ଆପଣଙ୍କ ପାଖକୁ ? ଆପଣ କେଉଁଠି ଥିଲେ ସେତେବେଳେ ?"

—"କଲିକତାରେ···"

—"ସେ ଆପଣଙ୍କ ପାଖକୁ କାହିଁକି ଗଲା ?"

—"ସେ ଥିଲା ମୋର ପାଳିତ ଭାଇ । ବାପାଙ୍କର ପୁତ୍ରସନ୍ତାନ ନ ଥିଲା । ମୁଁ ଥିଲି ଏକମାତ୍ର କନ୍ୟା···ପୁତ୍ର ସନ୍ତାନ ନ ଥିବାରୁ ବାପା ତାଙ୍କ ନିଜ ଭଉଣୀର ପୁଅକୁ ଅର୍ଥାତ୍ ତାକୁ ପୁଅ କରି ଆଣିଥିଲେ···"

—"ହଁ, ତା' ପରେ···"

—"ମୁଁ ତା'ଠାରୁ ସବୁ ଶୁଣି ତାକୁ ଓ ତୁମକୁ ବହୁତ ବୁଝାଇଲି । ତୁମ ଦୁହିଁଙ୍କର ମନ ପରିବର୍ତ୍ତନ ପାଇଁ ମୁଁ ତୁମକୁ ଝୈଲଙ୍ଗ-ସ୍ୱାମୀଙ୍କଠାରୁ ଆରମ୍ଭ କରି ଏଇ ଶ୍ରୀଜଗନ୍ନାଥଙ୍କ କ୍ଷେତ୍ର ପୁରୀକୁ ମଧ୍ୟ ଆଣିଥିଲି, ମାତ୍ର..."

ପ୍ରେତାତ୍ମା ବାଧାଦେଲା, "କିଛି ଫଳ ହେଲାନି ବୋଧେ ?"

—"ନା ।"

—"ହେଉ ।"

—"ମୁଁ ତାକୁ ବହୁତ ଗାଳିଦେଲି । ଏପରିକି, ମୁଁ ତା' ମୁହଁ ଗ୍ଚହିଁବିନି ବୋଲି କହିଲି । ମାତ୍ର ସେ ମୋ କଥା ଶୁଣିଲାନି । ଶେଷରେ ସେ ତୁମକୁ ବିବାହ କଲା ।"

—"ତା' ପରେ ?"

—"ସବୁଆଡ଼ୁ ଆଘାତ ପାଇ ତୁମେ ଦୁହେଁ ଭାରତ ଗ୍ଚଡ଼ିଲ । ତୁମ ସହିତ ତା' ଜୀବନ ଗ୍ରନ୍ଥର ଦୁଃଖର ଅଧ୍ୟାୟ ଆରମ୍ଭ ହେଲା ।"

—"କ'ଣ ହେଲା ?"

—"ସମୁଦ୍ରରେ ଯାଉ ଯାଉ ତୁମେ ଅସୁସ୍ଥ ହୋଇପଡ଼ି ମୃତ୍ୟୁବରଣ କଲ..."

ଅନୀତା କେମିତି ଗୋଟାଏ କେଳ ଚିତ୍କାର କଲା...ସମୁଦ୍ରର ଅଶାନ୍ତ ପରିବେଶଟାକୁ ତା' ଚିତ୍କାର ଯେମିତି ଚିରି ପକାଇଲା ।

—"ତୁମ ଦୁହିଁଙ୍କର ପରସ୍ପର ପ୍ରତି ଭୟଙ୍କର ଆସକ୍ତି ଥିବା ହେତୁ ଦୁହେଁ ଏ ଜନ୍ମରେ ବିଦେଶରେ ଜନ୍ମଲାଭ କଲ । ସେ ହେଲା କଲେଜରେ ଗଣିତ ଅଧ୍ୟାପକ ଆଉ ତୁମେ ସେଇ ବିଶ୍ୱବିଦ୍ୟାଳୟର ଗ୍ଛାତ୍ରୀ..."

—"କିନ୍ତୁ ଏମିତି...ଏମିତି କାହିଁକି ହେଲା ?"

—"ସବୁ ବିଧିନିର୍ଦ୍ଦିଷ୍ଟ ମା, ଧୈର୍ଯ୍ୟ ଧର ।"

ପ୍ରେତାତ୍ମା ପ୍ରତିଦିନ ଠିକ୍ ପ୍ରାୟ ନିର୍ଦ୍ଦିଷ୍ଟ ସମୟରେ ସାଧିକାଙ୍କ ପାଖରେ ସହସ୍ର ପ୍ରାର୍ଥନା ଜଣାଇଲା, "ମା' ମତେ ଏ ଯନ୍ତ୍ରଣାରୁ ଉଦ୍ଧାର କର...ମୋର ଇଚ୍ଛା ସେ ଆଉ ବିବାହ ନ କରୁ । ଆପଣ ତ ମା' ଜଣେ ଅନନ୍ୟା ସାଧିକା, ଆପଣ ତାକୁ ଆଧ୍ୟାତ୍ମିକ ଦିଗରେ ଆଗେଇ ନିଅନ୍ତୁ—ସେ ଶାନ୍ତ ପାଉ; କିନ୍ତୁ ସେ ବିବାହ ନ କରୁ । ପୂର୍ବଜନ୍ମର ସମ୍ପର୍କବଶତଃ ସ୍ନେହଗୁଣେ ଆପଣଙ୍କ ପାଖରେ ମୁଁ ଏଇ ଅଧିକାର ଦାବି କରୁଛି..."

ଶାନ୍ତ ସ୍ୱରରେ ସାଧିକା କହିଲେ "...ମୁଁ ଚେଷ୍ଟା କରିବି ମା'...ତୁମେ ଯାହା ଯାହା କହିଲ, ମୁଁ ତୁମର ସବୁ ଇଚ୍ଛା ପୂରଣ କରିବାକୁ ଚେଷ୍ଟା କରିବି ।"

—"ଖାଲି ମୋର ନୁହେଁ ମା' । କାନ ଦେଇ ଶୁଣ, ସମୁଦ୍ରରେ କେମିତି ସବୁ ବୁଡ଼ିଯାଇଥିବା ଲୋକ ଆର୍ତ୍ତନାଦ କରି ଉଦ୍ଧାର ପାଇବାକୁ ଅନୁରୋଧ କରୁଛନ୍ତି । ତୁମେ ସେ ସମସ୍ତଙ୍କୁ ଉଦ୍ଧାର କର । ତୁମେ ପାରିବ ମା !"

ସାଧିକା ଚୁପ୍ ରହିଲେ । ଅଳ୍ପ ସମୟ ଅନ୍ୟାନ୍ୟ କଥାବାର୍ତ୍ତା ପରେ ପ୍ରେତାତ୍ମା ବିଦାୟ ନେଲା ସେଦିନ ପାଇଁ ।

ବାପ୍‌ଦାଙ୍କୁ ହରାଇ ସେ ସମ୍ପୂର୍ଣ୍ଣ ପାଗଳ ହୋଇ ବହୁତ ଘୁରି ପଡ଼ିଲା । ବିଦେଶୀ ସାଥୀଟିଏ ତାକୁ ନେଇଆସିଲା ସାଧିକାଙ୍କ ପାଖକୁ । ସାଧିକା ଉଦାର ହୃଦୟରେ ତାକୁ ଆଶ୍ରୟ ଦେଲେ ତାଙ୍କ ପାଖରେ । ଦିନାଦିନ ପରେ ବିଦେଶରୁ ତାର ପଠାଇଲେ ତାଙ୍କର ପିତା । ସେ ସାଧିକାଙ୍କ ପାଖରୁ ବିଦାୟନେଇ ତାଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ରାମକୃଷ୍ଣ ଆଶ୍ରମରେ ଆଶ୍ରୟ ଗ୍ରହଣ କଲା ।

ସେଦିନଠୁଁ ପ୍ରତିବର୍ଷ ସେ ଶ୍ରୀକ୍ଷେତ୍ରକୁ ସାଧିକାଙ୍କ ପାଖକୁ ଆସେ । ସମୁଦ୍ର ବେଳାଭୂମିକୁ ଦୂରରୁ ଲକ୍ଷ୍ୟ କରେ । ଅଧିକାଂଶ ସମୟ ଚୁପ୍ ରହେ । ସାଧିକାଙ୍କ ନିର୍ଦ୍ଦେଶିତ ମାର୍ଗରେ ଆଧ୍ୟାତ୍ମିକ ଉନ୍ନତି ଲାଭ କରେ । ହଜିଲା ଦିନର ସ୍ମୃତି-ଫୁଲର ପାଖୁଡ଼ାଗୁଡ଼ାକ ଶୁଖି ଶୁଖି ତା' ମନ-ବଗିଚାରେ ଏଣେତେଣେ କୁଆଡ଼େ ପଡ଼ିଯାଏ, ତା'ର ହିସାବ ରଖେନି । ତାକୁ ସାଉଁଟି ଆଣିବାକୁ ମନ କରେନି । ଆଉ ଅମିତା...

ସାଧିକାଙ୍କର କୃପାରୁ ଭାରତରେ ହିଁ ସେ ଜନ୍ମଲାଭ କରିଛି । ବିଗତ ଜନ୍ମର ସବୁ ସ୍ମୃତି ତା' ମନରୁ ପୋଛି ହୋଇଯାଇଛି ।

ଶ୍ରୀ ଜଗନ୍ନାଥଙ୍କ ପୁଣ୍ୟକ୍ଷେତ୍ରରେ ଘଟିଯାଇଥିବା ଏଇ ଘଟଣାରୁ ଏତିକି ସେମିତି କିଏ ଅଙ୍ଗୁଳି ନିର୍ଦ୍ଦେଶ ପୂର୍ବକ କହିଦେଉଛି "ବିଧିର ବିଧାନ ଯେତେ ଦୁଃଖଦ ହେଲେହେଁ ଅବଶ୍ୟମ୍ଭାବୀ "ଭବିତବ୍ୟ ଭବତ୍ୟେବ ।"...ଜନ୍ମାନ୍ତର ଚିନ୍ତାପୂର୍ବକ ସାଧୁସନ୍ଥାଶ୍ରୟୀ ହୁଅ...ଆଧ୍ୟାତ୍ମିକ ଚିନ୍ତାଧାରା ଏବଂ ବିଭୁପଦାଶ୍ରୟ ହିଁ ସଂସାରର ସମସ୍ତ ଦୁଃଖର ସମାପ୍ତି ଆଣିଦିଏ ।





କୁନ୍ତୀ ଚରିତ୍ରର ଏକ ଅଦ୍ଭୁତ ପରିପ୍ରକାଶ ଏ ଉପାଖ୍ୟାନ। ଏବେ ବି କୁନ୍ତୀ ଭଳି ଭକ୍ତ ପ୍ରଭୁଙ୍କୁ ଦର୍ଶନ କରିବାକୁ ଆସନ୍ତି। ଏବେ ବି ପ୍ରାଣରେ ପ୍ରାର୍ଥନା ଜଣାନ୍ତି ପୁରୁଷୋତ୍ତମଙ୍କୁ, ସୁଖ ନଦେଇ ଦୁଃଖ ଦେବାକୁ। ବିପରି ଚପଡ଼ିଲେ, ସେମାନଙ୍କର ଦୃଢ଼ ଧାରଣା, ସେମାନେ ଶ୍ରୀପତିଙ୍କୁ ଭୁଲିଯିବେ।

"ଅଭାଗିନୀ, ଭାଗ୍ୟବତୀ କୁନ୍ତୀର ପ୍ରଣାମ ନେଉ ବାସୁଦେବ ଶ୍ରୀକୃଷ୍ଣ... ।"

ଠିକ୍ ସେଇ ସ୍ୱର, ସେଇ କାରୁଣ୍ୟ, ସେଇ ମିନତି, ସେଇ ଦରଦୀକଣ୍ଠର ବିକଳ ପରପ୍ରକାଶ ଏବଂ ଠିକ୍ ସେଇ ରତ୍ନସିଂହାସନସ୍ଥ ମହାପ୍ରଭୁଙ୍କ ପାଦତଳେ ଅଭିବ୍ୟକ୍ତ । ଏଥର ନିଶ୍ଚିତ ହେଲ ପ୍ରାର୍ଥନାକାରିଣୀଙ୍କ ପରିଚୟରେ । ନିର୍ଦ୍ଦିଷ୍ଟ ଝରକା ଦେଇ ତାଙ୍କୁ ଖୋଜି ରହିଲ । ଜନଗହଳି ମଧ୍ୟରେ ସେ ଯେପରି ଅଦୃଶ୍ୟ ହୋଇ ନ ଯାଆନ୍ତି, ସେଥିପ୍ରତି ସତର୍କ ଦୃଷ୍ଟି ଦେଲି । ସବୁଦିନ୍ପର ପରି ସେ ଶ୍ରୀଜଗନ୍ନାଥଙ୍କ ପାଦତଳୁଁ ଅବିର ଗୋଟାଇ ଆଣି ମୁଣ୍ଡରେ ବୋଳିଦେଲେ ଏବଂ କାନରୁ ମେଞ୍ଚାଏ ଅବିର ଆଣି ତାଙ୍କ ସୁନାପାଦରେ ଲେପି ପକାଇଲେ । ତା'ପରେ ଧୀରେ ଧୀରେ କଳାହାଟ ଦ୍ୱାର ଦେଇ ବାହାରି ଆସିଲେ । ଅଣସର ପିଣ୍ଡିରେ ପହଞ୍ଚି ପୁଣି ଥରେ ପଛକୁ ଚାହିଁଲେ । ସେତେବେଳକୁ ତାଙ୍କ ଆଖିରେ ଲୁହର ଜୁଆର । କାନରେ ଲୁହ ପୋଛି ସେ ତଳକୁ ମୁହଁ ପୋତି ବେହରଣ ଦ୍ୱାର ଦେଇ ସେତେବେଳେ

ମାଜଣାମଣ୍ଡପ ପାହାଚ ଦେଇ ମାଜଣାମଣ୍ଡପରେ ଆଖି ବୁଜି ବସିପଡ଼ନ୍ତେ, ସେତେବେଳେ ସେ ଆଦୌ ଜାଣି ନ ଥିଲେ ଯେ ମୁଁ ଠିକ୍ ତାଙ୍କ ସାମ୍ନାରେ ବସିଛି ।

ବହୁତ ସମୟ ସେ ଆଖିବୁଜି ଧ୍ୟାନସ୍ଥ ହେଲେ । ତା'ପରେ ତାଙ୍କ ଆଖିରୁ ଝରିଯାଉଥିବା ଲୁହ ସହିତ ତାଳଦେଇ ମୁହଁରୁ ଝରିପଡ଼ିଲା କୁନ୍ତୀସ୍ତବ । ପାଠାନ୍ତେ, ସେ ଭୂମିଷ୍ଠ ପ୍ରଣାମ କଲେ ଓ ଭୂଇଁରୁ ମୁଣ୍ଡ ଉଠାଇ ଉଦାସ ଆଖିରେ ଚାରିଆଡ଼କୁ ଚାହିଁଲେ ।

ମାଜଣାମଣ୍ଡପ ଉପରେ ସେ ଓ ମୁଁ । ଆମ ଦୁହିଁଙ୍କ ଛଡ଼ା ଆଉ କେହି ନ ଥିବା ଯୋଗୁଁ ସେ ମତେ କିଛିକ୍ଷଣ ପାଇଁ ଚାହିଁ ଆଖି ଫେରାଇନେବାବେଳେ ମୁଁ ତୁଣ୍ଡ ଖୋଲିଲି, "ଯଦି କିଛି ନ ଭାବନ୍ତେ..."

ସେ ମତେ ଆଶ୍ଚର୍ଯ୍ୟ ହୋଇ ଚାହିଁଲେ । ତାଙ୍କ ଚାହାଁଣିରେ ଯେପରି କରୁଣତା ଫୁଟି ଉଠୁଥିଲା । ସେ ମତେ ପଚାରିଲେ, "କ'ଣ କହିବାକୁ ଚାହୁଁଛନ୍ତି ଆପଣ ?"

ତାଙ୍କର ପ୍ରଶ୍ନରେ ସାମାନ୍ୟ ଅପ୍ରତିଭ ହୋଇ ଉଠିଲି । ତଥାପି ସାହସ କରି ପଚାରିଲି, "ଆପଣ ସବୁ ବର୍ଷ ଏଇ ଦୋଳପୂର୍ଣ୍ଣିମାରେ ଠାକୁରଙ୍କ ପାଖକୁ ଆସନ୍ତି । ଆପଣଙ୍କ ଘର ?..."

"ବହୁତ ଦୂରରେ । ମାନେ ଏଠୁ ଉନଇଦିନର ବାଟ ।"

"କେଉଁଠି ?"

"ଉତ୍ତରକାଶୀ ଜାଣିଛନ୍ତି ? ସେଇଠୁ ଦିନକର ବାଟ ଚାଲିବାକୁ । ଗୋଟାଏ ପାହାଡ଼ ତଳେ । ଡେହରି ଗଡ଼ୱାଲ..."

"କିନ୍ତୁ ଆପଣ ତ ଓଡ଼ିଆ..."

"ହଁ, ହଁ, ମୁଁ ଏଇ ମାଟିରେ ଜନ୍ମ । ଏଇଠି ମୋର ପୂର୍ବପୁରୁଷଙ୍କ ବୁନିଆଦ ଏବେ ବି ବଜାୟ ରହିଛି ।"

"ତେବେ ଆପଣ ?"

"ପରିସ୍ଥିତିରେ ପଡ଼ି ମୁଁ ଯାଇ ହିମାଳୟରେ ରହୁଛି । ହଁ, ମୋ ବିଷୟରେ ଜାଣିବା କ'ଣ ଆପଣଙ୍କର ନିହାତି ଦରକାର ?"

ସରଳ ଭାବରେ ଉତ୍ତର ଦେଲି, "ସବୁ ବର୍ଷ ଆପଣଙ୍କୁ ଠିକ୍ ଏଇ ସାହାଣ ମେଲରେ ଏଇ ପୂର୍ଣ୍ଣିମୀଦ୍ଦିନ ଦେଖେ । ଠିକ୍ ଏଇ ବିଧବା ବେଶ, ଏମିତ ଉଦାସିଆ କଥା, ଏମିତ ରତ୍ନବେଦୀରେ ମୁଣ୍ଡ କୋଡ଼ିବା, ଅବିର କୋଳାଇବା, କୁନ୍ତୀ ସ୍ତୁତ..."

ସେ ଚମକ ପଡ଼ିଲେ । ମୁଁ ତାଙ୍କୁ ଏତେ ନିବିଡ଼ ଭାବରେ ଜାଣିଛି ବୋଲି ସେ ଅବହିତ ନ ଥିଲେ । ତାଙ୍କୁ ଚିନ୍ତାରାଜ୍ୟରେ ବୁଡ଼ିଯାଇ ଅଡ଼ୁଆସୂତା ଖୋଲିବାର ସୁଯୋଗ ନ ଦେଇ କହିଲି, "ଦେଖନ୍ତୁ, ଯଦି କହିବାରେ କିଛି ଅସୁବିଧା ଥାଏ, ତେବେ..."

ବଳିଷ୍ଠ ବଳିଷ୍ଠ ପାଞ୍ଚଜଣ ପୁରୁଷ ହଠାତ୍ ପଚାରିଥିଲେ, "ମା, ଯିବୁନି, ଦ୍ରୌପଦୀ ବାହାରେ ଚାହିଁଛି..."

"ଯୁଧିଷ୍ଠିର ଆଉ, ତୁମେ ସବୁ ଚାଲିଯାଅ ରହିବା ଜାଗାକୁ । ଭୀମକୁ ଆଗ ଖାଇବାକୁ ଦେଇଦେବ । ଦ୍ରୌପଦୀକୁ କହିବ, ସେ ଶିକାରେ ଟଙ୍ଗା ହୋଇଥିବା ଶାଗ ଅଳ୍ପ ରାନ୍ଧିବ । ଆଜି ଯିବି ଶାଗ ଖାଇବାକୁ ।"

ସେମାନେ ଏସବୁ କଥା ବୁଝିଲେ ହେଲେ । କୌତୂହଳୀ ହୋଇ ପଚାରିଲି, ଏମାନେ...ଯୁଧିଷ୍ଠିର...ଭୀମ..."

"ମୋର ପାଞ୍ଚପୁଅ ।"

"ଦ୍ରୌପଦୀ ?"

"ବୋହୂ ।"

ଯୁଧିଷ୍ଠିର ମାଜଣାମଣ୍ଡପର ପାହାଚରେ ଧୀରସ୍ଥିର ହୋଇ ବସି ରହିଲେ । କ୍ରମଶଃ ତାଙ୍କର ଆଖି ବୁଜି ହୋଇଗଲା । ଓଠର ଗତିରୁ ଜାଣିଲି ସେ 'କୃଷ୍ଣ' 'କୃଷ୍ଣ' କହୁଥାନ୍ତି ତଲ୍ଲୀନ ହୋଇ ।

ସେ ଆରମ୍ଭ କଲେ, "ଗୋଟାଏ ଅଦ୍ଭୁତ ଜୀବନ ମୋର । ଯାଜପୁର ପାଖାପାଖି ଘର ଥିଲା । ଦିନେ ବାପାଙ୍କ ସାଙ୍ଗରେ ଏଇ ଦେଉଳକୁ ଆସିଥିଲି । ଗୋଟାଏ ଧର୍ମଶାଳାରେ ବାସହିଁ ଅ ରହିଥିଲୁ । ମତେ ସେତେବେଳକୁ ଏଗାର ବର୍ଷ । ନିଦରେ ଶୋଇବା ଅବସ୍ଥାରେ ସ୍ୱପ୍ନ ଦେଖିଲି । ପ୍ରଥମେ ଜଗନ୍ନାଥ... ତା'ପରେ ଧୀରେ ଧୀରେ କୃଷ୍ଣ । ତା'ପରେ ମତେ ଡାକୁଛନ୍ତି, 'କୁନ୍ତୀ, କୁନ୍ତୀ' ।

"ଆପଣଙ୍କ ନାଁ କ'ଣ କୁନ୍ତୀ ?"

"ନା, ମୋ ନାଁ ଥିଲା ସୌଦାମିନୀ ।"

"ଆଉ କୁନ୍ତୀ ?"

"କହେ ସରିଗଲା । ଦେଖିଲି, ଆଗରେ ସ୍ୱୟଂ ଉଭା ହୋଇଛନ୍ତି, ମତେ କହିଲେ, 'କୁନ୍ତୀ, ମୋ ସାଙ୍ଗରେ ଆସ ।' ମତେ ଯେମିତି କିଏ ମନ୍ତ୍ର କରିଦେଲା । ମୁଁ ତାଙ୍କ ପଛେ ପଛେ ଗଲି ।"

"ତା'ପରେ ?"

"ଆମେ ଦୁହେଁ ଦେଉଳରେ ପଶିଲୁ ସିଂହଦ୍ୱାର ଦେଇ । ବାଇଶି ପାହାଚରେ ଉଠିଲାବେଳେ ପ୍ରତ୍ୟେକ ପାହାଚରେ ସେ ମୋ ମୁଣ୍ଡକୁ ଆଉଁସି ଦେଉଥାଆନ୍ତି ଓ କ'ଣ ଗୋଟାଏ ଗୁଣୁଗୁଣୁ ହୋଇ କହୁଥାଆନ୍ତି ।"

"ଏ କଥା କେହି ଦେଖିପାରୁ ନ ଥିଲେ ?"

"ନା, ରାତି ସେତେବେଳକୁ ପାହିବା ପାହିବା ହେଉଥାଏ । ବଡ଼ଦେଉଳରେ ସେ ପର୍ଯ୍ୟନ୍ତ ପହଡ଼ ହୋଇ ନ ଥିଲା । ସେ, ମତେ ଏଇ ମାଜଣା ମଣ୍ଡପକୁ ଆଣି କହିଲେ, 'ମହାଭାରତ ପଢ଼ିଛୁ ?' କହିଲି, 'ବୋଉଠୁଁ ଶୁଣିଛି । ପାଠ ତ ପଢ଼ିନି' ।"

ଟେଣ୍ଟ···ସେ ହସିଲେ । କହିଲେ, "ସବୁଥିରେ ପାଠ ଦରକାର ନାହିଁ କୁନ୍ତୀ । ହଁ, ତତେ ମହାଭାରତରେ କିଏ ବେଶୀ ଭଲ ଲାଗେ । ଦ୍ରୌପଦୀ, କୁନ୍ତୀ, ସୁଭଦ୍ରା, ଗାନ୍ଧାରୀ··· ।" ମୁଁ କହିଲି, "କୁନ୍ତୀ" । ସେ ପୁଣି ହସି ହସି ଗଡ଼ିଗଲେ ।

"ତା'ପରେ ?"

"ମୁଁ ଆଉ କିଛି ଜାଣିନି । ସେଇ ମାଜଣାମଣ୍ଡପରୁ ସିଧା ତେହରି ଗରଡ଼ିଆଳର ସେଇ ଗାଁ, ଯେଉଁଠି ମୁଁ ପହଞ୍ଚିଲି ସେଠି ମୋର ବାପଘର ହେଲା । ସ୍ୱାମୀଙ୍କ ନାଁ ପଣ୍ଡୁ ।"

"ଆରେ, ଆଶ୍ଚର୍ଯ୍ୟ । ଏ ସବୁ କ'ଣ ସତ ନା ରହସ୍ୟ ?"

"ଦେଢ଼ଶୁରଙ୍କ ନାଁ ବି ଧୃତରାଷ୍ଟ୍ର । ସେ ଅନ୍ଧ··· ।"

"ତାଙ୍କର କ'ଣ ଶହେ ପୁଅ··· ?"

"ନା, ବାରପୁଅ ବଞ୍ଚିଥିଲେ । ଛଅପୁଅ ମରିଥିଲେ ।"

"ଯାଆଙ୍କ ନାଁ ଗାନ୍ଧାରୀ ?"

"ହଁ ।"

ଷାଠିଏ-ସତୁରି ବର୍ଷର ବୁଢ଼ୀ ତୁଣ୍ଡରୁ ଏ ସବୁ ଶୁଣି ମୁଁ ରହସ୍ୟ-ଜାଲରେ ଛନ୍ଦି ହୋଇଯାଇଥିଲି । ମୁଁ ପଚାରିଲି, "ଆପଣ କ'ଣ ଜଗନ୍ନାଥଙ୍କୁ ସେଠି ଆଉ ଦେଖୁଥିଲେ ?"

"ନା, କେବଳ ମୁହୂର୍ତ୍ତିକ ପାଇଁ ଦେଖେ । ଅଚ୍ଛଟକେ କୃଷ୍ଣ ହୋଇ ଯାଆନ୍ତି । ସେମିତି ମୟୂରଚୂଳ, ପୀତାମ୍ବର, ବେଣୁଧାରୀ, ହସହସ, ଛନ୍ଦାଚରଣ···

"କ'ଣ କହନ୍ତି ?"

"କିଛି ନାହିଁ । ସ୍ୱପ୍ନେ, ସ୍ୱପନେ, ଜାଗରଣେ ଦେଖାଦେବେ । ଆଖିପିଛୁଳାକେ ହସି ହସି ପବନରେ ଭାସିଯିବେ । ସମ୍ପର୍କରେ ପାଞ୍ଚପୁଅଙ୍କ ଜନନୀ ହେଲି । ତାଙ୍କରି ନିର୍ଦ୍ଦେଶରେ ନାଁ ଦେଲି ପଞ୍ଚ ପାଣ୍ଡବଙ୍କର । ପିଲାଗୁଡ଼ାକ ବି ଠିକ୍ ହେଲେ ସେଇ ମହାଭାରତର ଚରିତ୍ର ଭଳି । 'ଭୀମ'କୁ ଦେଖିବ । ଆମେ ଏତକ ଟିକେ ଅଭଡ଼ା ଖାଇଲା ବେଳକୁ ତା' ପେଟରେ ଅଧା-ବାଇହାଣ୍ଡି କୁଆଡ଼େ ଲୁଚିଯାଏ ।"

"ହଁ, ଏ ଯେ ବସିଛନ୍ତି," ମୁଁ ହାତ ଦେଖେଇଲି ମାଳଣୀମଣ୍ଡପ ପାହାଚରେ ବସିଥିବା ପୁଅଙ୍କୁ ।

"ଯୁଧିଷ୍ଠିର, ଧ୍ୟାନସ୍ଥ । ସବୁବେଳେ 'କୃଷ୍ଣ-ଧ୍ୟାନ' ଧର୍ମ ଅବତାର । ହଁ, ଯାହା କହୁଛି ଶୁଣନ୍ତୁ । ଦେଢ଼ଶୁରଙ୍କ ପୁଅମାନଙ୍କ ସାଙ୍ଗରେ ଜମିବାଡ଼ି କଳି ଲାଗିଲା । ଆମକୁ ଗାଁରୁ ବାହାର କରିଦେଲେ ।"

"ସେଇଠୁ ?"

"ପାଞ୍ଚ ପୁଅଙ୍କୁ ଧରି ଏ ଗାଁକୁ ସେ ଗାଁ ହେଲି । ଲୁହ ନ କାନ୍ଦି ଲହୁ କାନ୍ଦିଲି । ସ୍ୱାମୀ ଚାଲିଗଲେ ବାହାଘରର ସାତବରଷ ନ ପୂରୁଣୁ ।"

"ଆଉ ଦ୍ରୌପଦୀ ?"

"ସେଇ ଗାଁ ଓ ପରିବାରର ପ୍ରଥା । ସବୁ ଭାଇ ଯଦି ଚାହିଁବେ ଗୋଟିଏ କନ୍ୟାକୁ ବାହା ହେବେ । ଝିଅଟିଏ ବି ସେମିତି ମିଳିଗଲା ।"

"ଏତେ ଦୁଃଖରେ, ଅଥଚ···।"

ସେ ହସିଲେ । କହିଲେ, "ଏତେ ଦୁଃଖରେ ନୁହେଁ, ଏତେ ସୁଖରେ । ସବୁ ତାଙ୍କରି ଯୋଗୁଁ । ସବୁବେଳେ ଦେଖା ହୋଇ ସାହା ହୁଅନ୍ତି । କଣ୍ଟାବଣରେ ଚାଲିଲେ ବି ଆମ ଗୋଡ଼ରେ କଣ୍ଟା ଗଳେନି । ଦେଢ଼ଶୁରଙ୍କ ପୁଅମାନେ ପିଛୁ ପିଛୁ ଲାଗିଛନ୍ତି । ଘର ପୋଡ଼ିଦେଲେ । ଏମିତି ହେଲା, ଭାଦେ ଦ୍ରୌପଦୀର ସବୁ ଲୁଗା, ମୋର ସବୁ ଲୁଗାରେ ନିଆଁ ଲଗେଇ ଦେଲେ ।"

"ଓଃ, କି ଦୁଃଖ ।"

"ନା, ନା, ଦୁଃଖ ନୁହେଁ ସୁଖ । ସେଦିନ ଗାଧୋଇ ସାରି ଶାଶୁ-ବୋହୂଙ୍କର ବଦଳେଇବାକୁ ଲୁଗା ନ ଥାଏ । ଶାଶୁ-ବୋହୂ ଲାଜରେ

ବସିଥାନ୍ତୁ । ଅନ୍ଧାରୁ ଅନ୍ଧାରୁ ଝିବଲୁ ଗାଧୋଇ ନିଃବସ୍ତ୍ର ହୋଇ ବସିରହନ୍ତୁ—ମାସ କୃଷ୍ଣ···''

"କ'ଣ କଲେ ?''

''ସେଇ ଅନ୍ଧାରୁ ହାଜର । ହସି ହସି କହୁଲେ, "ଦ୍ରୌପଦୀର ଲୁଗା ନାହିଁ ନା କୁନ୍ତୀ ? ବାହାହେଲା ଆଗରୁ ଦୁଃଖୀରଙ୍କୀଙ୍କୁ କେତେ ଯେ ଲୁଗା ବଢ଼େଇ ଦେଇଛୁ ସେ । ତାଙ୍କୁ ସେଥିପାଇଁ ମୁଁ ଏମିତି ଅବସ୍ଥାରେ ପକେଇ ପାରିବନି । ନଈକୂଳରେ ଗାଧୋଇଯାଉ ଉଠକୁ ଉଠି ଶାଶୂ-ବୋହୂ ସେଠି ଥୁଆହୋଇଥିବା ଢ'ଥାକ ଲୁଗାରୁ ଖଣ୍ଡିଏ ପିନ୍ଧି ପକେଇବ । ହଁ, ତୁମ ଥାକରେ ଧଳା ଶାଢ଼ୀ, ଦ୍ରୌପଦୀର ରଙ୍ଗୀନ ।"

''ସତରେ କ'ଣ ସେଇଆ ହେଲା ?"

''ହଁ, ସେତିକି ନୁହେଁ, ଦ୍ରୌପଦୀ ପୁଣି ସେଇଦିନ ତାର ସବୁ ଲୁଗା ବାଣ୍ଟିଦେଲା ସେ ପାହାଡ଼ ଅଞ୍ଚଳର ଅଧାଲଙ୍ଗଳା ସ୍ତ୍ରୀଲୋକଙ୍କୁ । ତହିଁ ଆରଦିନ ପାଲଟିବାକୁ ଲୁଗା ନ ଥିଲା ।"

"ସେଇଠୁ ?"

"ସେଇ ଏକାକଥା । ଗାଧୋଇଯାଉବା ବେଳକୁ ଥାକେ ଶାଢ଼ୀ ।"

ବୁଢ଼ୀ ମା' କାହାଣୀ ଭଲ ମତେ ଲାଗୁଥାଏ ଏସବୁ । ମୁଁ ପଚାରିଲି, "ଏବେ ବି କ'ଣ ଏମିତି ଲୀଳା ସବୁଦିନେ ।''

"ସବୁଦିନେ ନୁହେଁ, ସବୁ ମୁହୂର୍ତ୍ତରେ ।"

"ଚୁଲି ଚୂଲ ନ ଥାଇ କେମିତି ରହୁଛନ୍ତି ?"

"ନ ଦେଖିଲେ କେହି ଆମ ଅବସ୍ଥା ବିଶ୍ୱାସ କରିପାରିବେନି । ଚୁଲି ନାହିଁ କି ଚୂଲ ନାହିଁ । ମାତ୍ର ଖିର, ଅମାଲୁ ଓ ରାଜପ୍ରାସାଦରେ ଅଭାବ ନାହିଁ ।"

"ସବୁବର୍ଷ ଏଇଦିନେ ଏଇଠିକି କାହିଁକି ଆସନ୍ତି ? ରହନ୍ତି କେଉଁଠି ?"

"ତାହା ହିଁ ନିର୍ଦ୍ଦେଶ । 'କୃଷ୍ଣ' ଥିଲେ ସବୁ ଅଛି । 'କୃଷ୍ଣ' ନ ଥିଲେ କିଛି ନାହିଁ । ଦୋଳପୂର୍ଣ୍ଣମୀରେ ମା', ପୁଅ, ବୋହୂ ଦର୍ଶନ କରି ତାଙ୍କ ପାଦରେ ଅବିର ବୋଳିଦେଉ ।"

"ପ୍ରାର୍ଥନା କ'ଣ କରନ୍ତି ?"

"ଦୁଃଖ ଦେବାପାଇଁ । ଦୁଃଖରେ ବୁଡ଼େଇ ରଖିବାକୁ । ବିପତ୍ତି ନ ଥିଲେ ଶ୍ରୀପତି ମିଳନ୍ତି ନି । ହଁ, ରହିବା କଥା । ସମୁଦ୍ର କୂଳରେ କୁଡ଼ିଆଟିଏ ଆମ ପାଇଁ ଥାଏ, ଶୋଇଲା ବେଳକୁ ମଣି ମୁକ୍ତାର ପ୍ରାସାଦ ହୋଇଯାଏ ।"

"ମୁଁ ଦେଖିପାରିବି ?"

"ମୁଁ କ'ଣ ଦେଖିବାକୁ ଇଚ୍ଛା ? କୁଞ୍ଜ ନା ମଣିପ୍ରାସାଦ ?"

"ଉଭୟ । ମତେ ଠିକଣା ..."

ସେ ଅମୃତ ହସ ହସିଲେ ! ହସି ହସି ଠିକଣା କହିଦେଲେ, "ଆସ, ଆସ, ଅନ୍ତଃପୁରରେ ଆସ ।"

"କୃଷ୍ଣଙ୍କୁ ଦେଖିପାରିବି ?"

"ଦୟା ଥିଲେ ସବୁ ସମ୍ଭବ ।" ଭାଗବତରେ ପଢ଼ି ନାହାନ୍ତି—

"ମୁଁ ଯାରେ ହୁଅଇ ସଦୟ । ଜ୍ଞାନ ତା' ହୃଦରୁ ଉଦୟ ।।"

ଅପୂର୍ବ ସୁନ୍ଦରୀ ଅବଗୁଣ୍ଠନବତୀ ଆସି ଡାକିଲେ, "ମା, ଆସ, ବହୁତ ବେଳ ହେଲାଣି...।"

ସେ କହିଲେ, "ଯାଉଛି ଦ୍ରୌପଦୀ ।" ସେ ଉଠିଲେ !

ମୁଁ ତାଙ୍କୁ ଶେଷ ପ୍ରଶ୍ନ କଲି ସସମ୍ଭ୍ରମେ, "ଯଦି କିଛି ନ ଭାବିବେ, ମୋତେ ଆଉ ଗୋଟିଏ ପ୍ରଶ୍ନର ଉତ୍ତର ଦିଅନ୍ତୁ, 'ଏମିତି କାହିଁକି ଆପଣଙ୍କ ଜୀବନରେ ହେଲା ?"

ସେ ସାମାନ୍ୟ ହସି କହିଲେ, "ଏ ସବୁ ବୁଝିହୁଏନା କି ବୁଝେଇ ହୁଏନା । ଏ ସବୁ ଅଦ୍ଭୁତ ବଚନ ଲୀଳା ଲୀଳାମୟଙ୍କର । ଦ୍ୱାପରଯୁଗର ଲୀଳାର ପୁନରାବୃତ୍ତି କାହିଁକି ସେ ଏ ଯୁଗରେ କରୁଛନ୍ତି । ତାଙ୍କୁ ହିଁ ଜଣା ।"

—"ଏ ଲୀଳାର ପରିସମାପ୍ତି କେଉଁଠି ?"

—ତା' ବି ତାଙ୍କୁ ଜଣା ।"

ସେ ମୋ ଆଗରେ ଥରି ଥରି ଚାଲି ଯାଉ ଯାଉ ଦ୍ରୌପଦୀ ପ୍ରଶ୍ନର ଉତ୍ତର ଦେଲେ, "ଯାଉଛି ମା' ।"

ମୁଁ କେମିତି ଗୋଟାଏ ଭାବରେ ତାଙ୍କୁ ଚାହିଁ ରହିଥିଲି । ପତିତପାବନ ଘୁମୁଟର ଗହଳି ଭିତରେ ସେ ହଜିଗଲେ ।